ସେତୁ

ଲେଖକ

**ମହେଶ ଚନ୍ଦ୍ର ମହାପାତ୍ର**

ପ୍ରକାଶକ

**ଲାର୍କ ବୁକ୍ସ**

ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ

ଭୌମ ନଗର, ଭୁବନେଶ୍ୱର ୭୫୧୦୦୧

ପ୍ରଥମ ପ୍ରକାଶ- ୧୯୭୩

ଦ୍ୱିତୀୟ ପ୍ରକାଶ- ୧୯୯୭

ପ୍ରଚ୍ଛଦ

ଅକ୍ଷର ସଂଯୋଜନା

**ଅବନ୍ତୀ କମ୍ପ୍ୟୁଟର ଏଣ୍ଡ୍ କମ୍ପ୍ୟୁନିକେଶନ**

ଶୈଳଶ୍ରୀ ବିହାର, ଭୁବନେଶ୍ୱର

ମୁଦ୍ରଣ

**ଶୋଭନ**

୧୦୬ ଆଚାର୍ଯ୍ୟ ବିହାର, ଭୁବନେଶ୍ୱର

**ତିରିଶ ଟଙ୍କା ମାତ୍ର**

ISBN 81 - 7375 - 027-0

**SETU**

Written by :

**Mahesh Chandra Mahapatra**

Publishers

**Lark Books**

Subarnarekha Chambers

Bhauma Nagar, Bhubaneswar 751001

First Edition- 1973

Second Edition- 1997

Cover

D.T.P./ Layout

**Abanti Computer & Communication**

Sailashree Vihar, Bhubaneswar

Printed at

**Shovan**

106 Acharya Vihar, Bhubaneswar

**Thirty Rupees Only**

## ପ୍ରଥମ ସଂସ୍କରଣର ଭୂମିକା

ଲୋପ ପାଇ ଆସୁଥିବା ସାମନ୍ତବାଦୀ ସମାଜର ସଂକେତ ସତ୍ୟବ୍ରତ ଚୌଧୁରୀ ପାଇଁ ନାୟିକା ବାଛିବାକୁ ହେଲା ଉଠି ଆସୁଥିବା ନିମ୍ନ ମଧ୍ୟବିତ୍ତ ସମାଜର ଇନ୍ଦିରା ମହାପାତ୍ରକୁ । ସମନ୍ୱୟ ଆଣିବା ପାଇଁ ଆବଶ୍ୟକ ହେଲା ସୁବ୍ରତର । ସେ ନବଯୁଗର ବାର୍ତ୍ତାବହ ।

ଗଳ୍ପଟି ରଚିତ ହୋଇଥିଲା ୧୯୬୭ ସାଲର ଅଗଷ୍ଟ ୨୭ ଓ ସେପ୍ଟେମ୍ବର ପହିଲା ମଧ୍ୟରେ ।

ଗଳ୍ପର ଘଟଣା ତଥା ଚରିତ୍ର ଗୁଡିକ ସଂପୂର୍ଣ୍ଣ କଳ୍ପନା ପ୍ରସୂତ — ଏ କଥା କହିବା ଅନାବଶ୍ୟକ ।

ଲେଖକ

## ଦ୍ୱିତୀୟ ସଂସ୍କରଣର ଭୂମିକା

ସେତୁର ପ୍ରଥମ ଆତ୍ମପ୍ରକାଶ ହୋଇଥିଲା ୧୯୭୩ରେ । ଆଜି ୨୪ ବର୍ଷ ପରେ ସେ ପୁଣି ଓଡ଼ିଆ ପାଠକଙ୍କ ପାଖରେ ନୂଆ ରୂପରେ ପହଞ୍ଚୁଛି । ସେଥିପାଇଁ ଲାର୍କ ବୁକ୍‌ସକୁ ଧନ୍ୟବାଦ ।

ଆଶା କରାଯାଉ ଏହି ସଂସ୍କରଣଟି ପାଠକଙ୍କ ଦ୍ୱାରା ଆଦୃତ ହେବ ।

୨୩.୩.୯୭ ଲେଖକ

ଭୁବନେଶ୍ୱର

**ଏଇ ଲେଖକଙ୍କର ଅନ୍ୟାନ୍ୟ କୃତି**

| | | |
|---|---|---|
| ❑ ଉପନ୍ୟାସ | - | ସୃଜନର ଛନ୍ଦ |
| | - | ଦେବା ନ ଜାନନ୍ତି |
| | - | ମାନସୀ |
| ❑ ଗଳ୍ପ | - | ଷଟ୍‌ପଦୀ |
| | - | ଦୁଇ କନ୍ୟାର କାହାଣୀ |
| ❑ ନାଟକ | - | ସବ୍ୟସାଚୀ |
| | - | କ୍ଷୁଧା |
| | - | ଦୁଇ ପୁରୁଷ |
| | - | ପରାଜୟ |
| ❑ ଗବେଷଣା ପ୍ରସୂତ | - | ଓଡ଼ିଆ ଭାଷାର ବ୍ୟାକରଣ |
| | - | ଆଧୁନିକ ଶିକ୍ଷା ଓ ଓଡ଼ିଶା |

# ଏକ

ଶ୍ରାବଣର ଅବିଶ୍ରାନ୍ତ ବର୍ଷଣ । ଚାରିଆଡର ଗଛ ବୃକ୍ଷରେ ବାରି ବର୍ଷଣ ଯିମିତି ସୃଷ୍ଟି କରୁଛି ଏକ ସୁମଧୁର ଐକ୍ୟତାନ । ବାରନ୍ଦାରେ ଆସି ଠିଆ ହେଲା ସତ୍ୟବ୍ରତ । ବାହାର ଆଲୁଅଟା ଜଳୁଛି । ସେ ଅନୁମାନ କଲା ବର୍ଷାର ପ୍ରାବଲ୍ୟ । ମଝିରେ ମଝିରେ ସୁ ସୁ ହୋଇ ପବନ ବୋହୁଛି । ପାଣି ଛାଟରେ ଓଦା ହୋଇଗଲା ତାରି ପରିଧେୟ । ବାରନ୍ଦାରୁ ଘର ଭିତରକୁ ଚାଲି ଆସିଲା ସେ । ଦୁଆର ଆଉଜେଇ ଦେଇ ଠିଆ ହେଲା । ଗୋଟାଏ ସିଗ୍ରେଟ ଲଗେଇଲା । ଘଡ଼ି ଦେଖିଲା, ସାତଟା । କଣ କରିବ ବୋଲି ଭାବିଲା ଟିକିଏ । ବହି ଥାକରୁ ଗୋଟାଏ ବହି ଆଣିବ ବୋଲି ହାତ ବଢ଼େଇଲା । ନଜର ପଡ଼ିଲା ଖଣ୍ଡେ ଚଟି ବହି ଉପରେ । ନାଗରୀ ଅକ୍ଷରରେ ଲେଖା ହୋଇଛି — 'ମେଘଦୂତଂ' । ଟାଣି ଆଣିଲା ବହିଟାକୁ । ଆଜିର ପରିବେଶକୁ କେବଳ ମେଘଦୂତ ହିଁ ସାଜିବ । ବିଛଣାରେ ଲମ୍ବ ହୋଇ ଶୋଇଲା । ଆରମ୍ଭ କଲା ଆବୃତ୍ତି, ବଡ଼ ପାଟିରେ । ଗୋଟାଏ ପଦ ପଢ଼ି ସାରିଛି, ତାକୁ ଶୁଭିଲା, ବାହାରେ କିଏ କବାଟ ଖଡ଼ ଖଡ଼ କରୁଛି । ଆବୃତ୍ତି ବନ୍ଦ କଲା ସେ । ଏଇ ଦୁର୍ଯୋଗ ଭିତରେ କିଏ ଆସିଲା ? ପୁଣି ଶବ୍ଦ ହେଲା — ଖଡ଼ ଖଡ଼, ନା, କିଏ ଡାକୁଛି । ଭାବିଲା, ଭୀମକୁ ଡାକି କହିବ ଦେଖିବାକୁ । ନା, ଡେରି ହେବ । ହୁଏତ କିଏ ବିପଦରେ ପଡ଼ି... । ଉଠି ପଡ଼ିଲା ସେ । ବାରନ୍ଦାକୁ ଆସି ଜାଲି ଭିତରୁ ଦେଖିଲା, ଗୋଟାଏ ଛତା ତଳେ କିଏ ଦୁଇଜଣ ଠିକ୍ ତାର ପିଣ୍ଡା ଉପରକୁ ଉଠିବା ପାହାଚର ଶେଷ ଧାପରେ ଠିଆ ହୋଇଛନ୍ତି । ଜଣେ ତା ଭିତରୁ ନାରୀ । ଶାଢ଼ି ଦିଶୁଛି । ଆଗେଇ ଯାଇ କବାଟ ଖୋଲିଦେଲା । ପଶି ଆସିଲେ ସେମାନେ । ବାରନ୍ଦାର ସୁଇଚ୍ ଟାଣି ଆଲୁଅ ଜଳେଇଲା ସେ । ଦେଖିଲା, ପୁରୁଷ ଲୋକଟି ଛତା ବନ୍ଦ କରି ଗୋଟାଏ କୋଣରେ ରଖିବାକୁ ଯାଉଛନ୍ତି । ଛତାରୁ ପାଣି ଝରି ଜାଗାଟାରେ ଠିଆ ହୋଇଗଲାଣି । ନାରୀ ମୂର୍ତ୍ତିଟି ଜଡ଼ସଡ଼ ହୋଇ ଠିଆ ହୋଇଛନ୍ତି । ସତ୍ୟବ୍ରତ ଦେଖିଲା ଦିଜଣ ସାରା ସମ୍ପୂର୍ଣ୍ଣ ତିନ୍ତି ଯାଇଛନ୍ତି । ଭଦ୍ରଲୋକଙ୍କର ପୋଷାକରୁ ବୋହୁଛି ପାଣି । ଭଦ୍ରମହିଳାଟି ଏତେ ଭିଜିଛନ୍ତି ଯେ, ଶୀତରେ ତାଙ୍କ ଦାନ୍ତ ଠକ୍ ଠକ୍ କରୁଛି । ଏକ ମୁହୂର୍ତ୍ତରେ ପରିସ୍ଥିତିଟାକୁ କଳନାରେ ଆଣିଲା ସେ । ଭଦ୍ରଲୋକ ହାତ ଯୋଡ଼ି, ଦାନ୍ତ ଦେଖେଇ କହିଲେ,

''ନିରୁପାୟ ହୋଇ...।''

ତାଙ୍କୁ କଥା କହିବାକୁ ଦେଲା ନାହିଁ ସତ୍ୟବ୍ରତ । ଡାକିଲା, ''ଆସନ୍ତୁ'' । ଦି'ଜଣଙ୍କୁ ନେଇଗଲା ଘର ଭିତରକୁ । ତା ଗାଧୁଆ ଘରଟା ଦେଲା ଭଦ୍ରମହିଳାଙ୍କୁ । ଆଉ ପାଖ ଶୋଇବା ଘର ସଂଲଗ୍ନ ଗାଧୁଆ ଘରେ ପଶିଲେ ଭଦ୍ରଲୋକ ।

''ଶୁଣନ୍ତୁ'', ଦୁଇଜଣଙ୍କୁ କହିଲା, ''ଲୁଗା ବଦଳେଇବା ପାଇଁ ବ୍ୟବସ୍ଥା କରୁଛି — ଆପଣମାନେ ଓଦା ଲୁଗା ପାଲଟନ୍ତୁ, ତଉଲିଆ ଅଛି, ପୋଛିପାଛି ହୁଅନ୍ତୁ । ଠିକ୍ ସମୟରେ ଶୁଖିଲା ଲୁଗା ହସ୍ତଗତ ହବ । ''

ସତ୍ୟବ୍ରତ ଫେରିଲା ତା ଶୋଇବା ଘରକୁ । ବୋତାମ ଟିପିଲା ତିନିଥର । ଦଉଡି ପଶି ଆସିଲା ସନିଆ ।

''ଯା, ତୋ ବାପ, ମା'ଙ୍କୁ ଡାକିଦେ ଜଲ୍‌ଦି । ଆଉ ଗୋଟାଏ ବଡ଼ କେଟଲିରେ ଗରମ ପାଣି ବସା । ଦୁଇ ମିନିଟ୍‌ରେ ପାଣି ଗରମ ହେବା ଦରକାର , ବୁଝିଲୁ ?''

ସନିଆ ଚାଲିଯାଉଥିଲା ।

''ଆଉ ଶୁଣ । '' ଠିଆ ହୋଇଗଲା ସନିଆ ଯାଉ ଯାଉ ।

''ଗରମ ଗରମ ଚା । ବାମ୍ପ ବାହାରୁଥିବ । ଗୋଟାଏ ପୁରା କେଟଲି । ପାଞ୍ଚ ମିନିଟ ଭିତରେ ହବତ ? ''

''ହଁ । ''

''ଯା, ଭୀମକୁ ଆଉ ତୋ ମା'କୁ ପଠେଇ ଦେ, ଶୀଘ୍ର । ''

ଆଲମାରୀ ଖୋଲିଲା ସତ୍ୟବ୍ରତ । ପଞ୍ଜାବୀ, ପାଇଜାମା କାଢ଼ିଲା । ଶାଢ଼ୀ ତ ନାହିଁ, କଣ କରିବ ? ଓ ତାର ଧୋତି ଅଛି । ଚଳିଯିବ । କାଢ଼ିଲା ଧୋତି । ପତଳା ମାର୍ସିରାଇଜଡ଼କରା ଧୋତି, ସଉକ କରିବାକୁ ମନ ହେଲେ ପିନ୍ଧେ । କିନ୍ତୁ ଏଥିରେ କଣ ନାରୀ ଦେହ ଆବୃତ ହେବ । ଅନେକ ଗୁଡାଏ ପିନ୍ଧନ୍ତି ସେମାନେ । ସାୟା, ବ୍ଲାଉଜ ଆହୁରି କଣ ସବୁ । ଗୋଟାଏ କିଛି ଘୋଡେଇ ଦେବାକୁ ହବ । ତାର ଶାଲ୍‌ଟା କାଢ଼ିଲା । ଭଦ୍ରମହିଳା ଥଣ୍ଡାରେ ଥରୁଥିଲେ । ଆଲମାରୀ ବନ୍ଦ କରି ଫେରି ଚାହିଁଲାବେଳକୁ ଠିଆ ହୋଇଛନ୍ତି ଭୀମ ଆଉ ସନିଆମା । ଭୀମକୁ ବଢ଼େଇ ଦେଲା ପାଇଜାମା, ପଞ୍ଜାବୀ । ବାକି ଲୁଗାପଟା ଦେଲା ସନିଆ ମା'କୁ । ତାକୁ କହିଲା, ''ମୋ ଗାଧୁଆ ଘରେ ଜଣେ ଝିଅ ଗାଧୋଉଛନ୍ତି । ତାଙ୍କୁ ପିନ୍ଧିବାକୁ ଏଇ ଧୋତିଟା ଦବ । ଏଇ ଶାଲ୍‌ଟା ଦବ ସେ ଢ଼ାଙ୍କିହେବେ । ତାଙ୍କର ଗରମ ପାଣି ଦରକାର ହୋଇପାରେ । ସନିଆକୁ କହିଛି । ସେ ପାଣି ଆଣୁଛି ଗରମ କରି । ତୁମେ ଯାଅ, ବାହାରୁ ଡାକି ସବୁ କଥା କହିବ । ଗରମ ପାଣି ଦବ ।''

ଭୀମକୁ ଡାକି ନେଲା ସେ ଆଉ ପାଖ ଘର ଆଡକୁ, ''ସେଠି ଜଣେ ବାବୁ ଗାଧୋଉଛନ୍ତି । ତାଙ୍କୁ ଲୁଗାପଟା ଦବ । ''

ସେମାନେ ଚାଲିଗଲେ । ସତ୍ୟବ୍ରତ ଆସି ବସିଲା ବୈଠକଖାନାରେ ।

ବଡ଼ ମୁସ୍କିଲ କଥା । ଏଇ ଦୁଇଟି ଅପ୍ରତ୍ୟାଶିତ ଅତିଥି ଏଇ ଦୁର୍ଯୋଗ ଭିତରେ ଆସି ତାର ଦ୍ୱାରସ୍ଥ ହୋଇଛନ୍ତି । କିଏ ଏମାନେ ? ଖୁବ୍ ସମ୍ଭବ ଗାଡ଼ି ଗୋଳମାଳ ହୋଇଛି । କିନ୍ତୁ ଏଇ ପାଗରେ ଏଇ ରାସ୍ତାରେ, ଏତେ ରାତିରେ କୁଆଡେ ଯାଉଥିଲେ ଏମାନେ ? ପ୍ରଥମ ବାହାରି ଆସିଲେ ସେଇ ଭଦ୍ରଲୋକ । ଚେହେରା ବଦଳି ଯାଇଛି । ପରିଷ୍କାର ଶୁଷ୍କ ବସ୍ତ୍ର ପିନ୍ଧି ତଉଲିଆରେ ମୁଣ୍ଡ ପୋଛୁ ପୋଛୁ ପଶି ଆସିଲେ । ସତ୍ୟବ୍ରତ ଡାକିଲା, ''ଆସନ୍ତୁ, ବସନ୍ତୁ ।'' ଭଦ୍ରଲୋକ ବସିଲେ ଗୋଟାଏ କାଉଚରେ । ହସି କହିଲେ, ''ଭଗବାନ ଯେ ଅଛନ୍ତି ଏବଂ ସବୁବେଳେ ଆମକୁ ରକ୍ଷା କରୁଛନ୍ତି, ଏକଥା ଆଜି ମୁଁ ବିଶ୍ୱାସ କଲି । ''

ଅନ୍ୟ ଦୁଆର ଦେଇ ପଶିଆସିଲେ ଭଦ୍ରମହିଳା । ସତ୍ୟବ୍ରତ ଠିଆ ହୋଇପଡ଼ି ଆହ୍ୱାନ ଜଣେଇଲା । ଧୋତି ପିନ୍ଧିଛନ୍ତି ଏବଂ ଶାଲ୍‌ଟାରେ ଆଣ୍ଠୁ ପାଖରୁ କାନ୍ଧଯାକେ ଅତି ସୁନ୍ଦର ଭାବରେ ଢ଼ାଙ୍କି ହୋଇଛନ୍ତି । ପୁଣି ଡାକିଲା ସେ, ''ଆସନ୍ତୁ, ବସନ୍ତୁ ।'' ବସିଲେ ଭଦ୍ରମହିଳା ତା' ପାଖ କାଉଚଟାରେ ।

''ଆପଣଙ୍କୁ କି ଭାଷାରେ ଧନ୍ୟବାଦ ଦିଆଯାଇପାରେ, ମୁଁ ବୁଝି ପାରୁନି । '' କହିଲେ ଭଦ୍ରମହିଳା ହସି ହସି ।

ସନିଆ ପହଞ୍ଚିଗଲା ଟ୍ରେ ନେଇ । ମଝି ଟେବୁଲରେ ନେଇ ରଖିଲା । ଭଦ୍ରମହିଳାଙ୍କୁ ଡାକିଲା ସତ୍ୟବ୍ରତ, ''ଆସନ୍ତୁ, ଆପଣ ଯେତେବେଳେ ଅଛନ୍ତି, ମା'ର କାମଟା ତୁଲାନ୍ତୁ, ଚା' ତିଆରି କରନ୍ତୁ । ଆପଣ ନିଅନ୍ତୁ ଆଉ ଆମ ଦିଜଣଙ୍କୁ ମଧ ଦିଅନ୍ତୁ । ''

ହସି ସତ୍ୟବ୍ରତ ସାଙ୍ଗରେ ଯୋଗଦେଲେ ଭଦ୍ରଲୋକ, ''ଠିକ୍ କହିଛନ୍ତି । ଯାର କାମ ତାକୁ ସାଜେ ।''

ଉଠି ଆସିଲେ ଭଦ୍ରମହିଳା ମଝିକୁ । ତିନିଟା ପିଆଲାରେ ଚା ତିଆରି କଲେ । ସତ୍ୟବ୍ରତ ଓ ତାଙ୍କ ସଙ୍ଗୀଙ୍କୁ ଦି'ଟା ପିଆଲା ବଢ଼େଇ ଦେଇ ନିଜେ ଗୋଟାଏ ଉଠେଇ ନେଇ ଚାମୁଚରେ ଚିନି ଗୋଳାଇଲେ । ସତ୍ୟବ୍ରତ କହିଲା, '' ଆଗ ଦେହଟା ଗରମ ହେଉ, ତା ପରେ ଆପଣମାନଙ୍କ କଥା ଶୁଣାଯିବ । ''

ଚୁପ୍‌ଚାପ୍ ଶୋଷିଲେ ସମସ୍ତେ ଯେଝା ପିଆଲାରୁ ଚା । ସତ୍ୟବ୍ରତ କହିଲା ଆଉ ପିଆଲେ ଲେଖା ଖାଇବା । ଚା ନିଶ୍ଚୟ ଅଛି ।

ଭଦ୍ରମହିଳା ମୁଣ୍ଡ ହଲେଇ ପୁଣି ତିଆରି କଲେ ଚା ।

ଚା' ଖିଆ ସାରି ପିଆଲାଟାକୁ ଟ୍ରେରେ ରଖି ସତ୍ୟବ୍ରତ କହିଲା, ''କହନ୍ତୁ ଏଥର ଆପଣମାନଙ୍କ କଥା । ଏଇ ଦୁର୍ଯୋଗରେ କୁଆଡୁ ଆସି ମୋ ଘରେ କଡ଼ା ଖଡ଼ଖଡ଼ କଲେ? ''

ଭଦ୍ରଲୋକ ଆରମ୍ଭ କଲେ, ''ଆଗ ପରିଚୟଟା ଦେଇ ଦିଏଁ । ମୁଁ ହୃଷୀକେଶ ଦାସ । ସମବାୟ ବିଭାଗର କର୍ମଚାରୀ । ସେ କୁମାରୀ ଇନ୍ଦିରା ମହାପାତ୍ର, ସହକାରୀ

ଶଲ୍ୟ ଚିକିତ୍ସକ । ମୁଁ ଯାଇଥିଲି ସମ୍ବଲପୁର ସରକାରୀ କାମରେ । ଶ୍ରୀମତୀ, ସମ୍ପର୍କରେ ମୁଁ ତାଙ୍କର ଭଗ୍ନିପତି , ଛୁଟିରେ ଘରକୁ ଆସିବାର ଥିଲା । ଆଜି ମୋର ଫେରିବାର ଦିନ । ତାଙ୍କର ଛୁଟି କାଲିଠୁଁ । ଦୁଇଜଣ ମୋ'ରି ଜିପ୍‌ରେ ଆସିବା ଠିକ୍ କଲୁଁ । ମୁଁ ସକାଳୁ ଆସି ପାରିଥାନ୍ତି । ଶ୍ରୀମତୀ ଡେରି କରିଦେଲେ । ଡାକ୍ତରଖାନାର କାମ । ଅଧସ୍ତନ କର୍ମଚାରୀଙ୍କୁ ବୁଝେଇ ସୁଝେଇ ଗାଡିରେ ଉଠିଲାବେଳକୁ ତିନିଟା । ଡ୍ରାଇଭର କଟକର । ସେ ଘରକୁ ଫେରିବ ଚାରିଦିନ ପରେ । ସୁତରାଂ ବାହାରି ପଡ଼ିଲୁ ।

''ବାହାରିଲାବେଳେ ସମ୍ବଲପୁରର ଆକାଶ ମେଘାଚ୍ଛନ୍ନ, କିନ୍ତୁ ବର୍ଷା ନ ଥିଲା । ରେଢ଼ାଖୋଲ ପାର ହେଇଛୁ, ଆରମ୍ଭ ହେଲା ବର୍ଷା । ଯେତେ ଆଗଉଛୁ, ବର୍ଷଣ ବଢ଼ି ଚାଲିଛି । ପାଣି ଛାଟରେ ଅଧେ ଓଦା ହୋଇଗଲୁ । ସରକାରୀ ଜୀପ୍, ଘୋଡା ଛ'ଟଙ୍କାକୁ ଦାନା ନ'ଟଙ୍କା । ଫଳରେ, କଳ ପ୍ରାୟ ବିଗିଡେ ଏବଂ ମରାମତିରେ ପଇସା ଠିକ ଭାବରେ ଖର୍ଚ୍ଚ ନ ହେବା ଫଳରେ ବିଗିଡି ଯାଏ ବର୍ଷରେ ଛ' ମାସ । ଏଇ ଆପଣଙ୍କ ଘରୁ ଅଧମାଇଲିଏ ଖଣ୍ଡେ ଦୂରରେ ଗାଡ଼ିଟା ବନ୍ଦ ହୋଇଗଲା । ଆଉ ଷ୍ଟାର୍ଟ ହେଲାନି । ପାଣି ପଶିଗଲା ଇନ୍‌ଜିନ୍‌ରେ । ଡ୍ରାଇଭର ଅଧଘଣ୍ଟାଏ ଖଣ୍ଡେ ସେଇ ବର୍ଷାରେ ଭିଜି ଚେଷ୍ଟା କଲା । ତା' ପରେ କହିଲା — ଗାଡ଼ି ଚାଲିବନି । ନିରୂପାୟ ହୋଇ ଚାରି ଆଡକୁ ଚାହିଁଲୁ । ଘୋର ଜଙ୍ଗଲ ।

'' ସେଇ ପ୍ରବଳ ବର୍ଷା ଭିତରେ ଦିଶିଲା ଗୋଟିଏ ଆଲୋକବିନ୍ଦୁ ! ଶ୍ରୀମତୀ ଦେଖିଲେ । କହିଲେ, 'ଚେଷ୍ଟାକରାଯାଉ ।' ମୋ'ରି ଛତାରେ ଦୁଇଜଣ ଆଗେଇଲୁ ସେଇ ବିନ୍ଦୁକୁ ଧ୍ରୁବ କରି । ତା' ପରେ ତ ଆପଣ ଆମକୁ ଦେଖିଲେ ଏବଂ ଆପଣଙ୍କର ଅପୂର୍ବ ଆତିଥ୍ୟରେ ଆମେ ଆପଣଙ୍କ ବୈଠକଖାନାରେ ନରମ ଗଦିରେ ବସି ଗରମ ଚା ପିଇଲୁଣି ଦି ପିଆଲା କରି । ''

ସମସ୍ତେ ହସିଲେ ।

ସତ୍ୟବ୍ରତ ପଚାରିଲା, ''ଆପଣଙ୍କ ଗାଡି ଆଉ ଡ୍ରାଇଭର ସେଇ ରାସ୍ତା ଉପରେ ?'' ହୃଷୀକେଶ ମୁଣ୍ଡ ହଲେଇବାରୁ କହିଲା, ''ସେମାନଙ୍କୁ ଆଣିବା ଦରକାର । ଆଚ୍ଛା ବ୍ୟବସ୍ଥା କରୁଛି । '' ଉଠି ଠିଆ ହେଲା ; କହିଲା, ''ଆପଣମାନେ ବସନ୍ତୁ ପନ୍ଦର ମିନିଟ ଭିତରେ ମୁଁ ଆସୁଛି । ''

ପିଣ୍ଡାକୁ ଆସି ସେ ସନିଆକୁ ଡାକିଲା । ତାର ଅଳ୍ପ ସମୟ ପରେ ଏମାନେ ଶୁଣିଲେ ଗୋଟାଏ ଗାଡିର ଶବ୍ଦ । ଦେଖିଲେ ଗୋଟାଏ ଲେଣ୍ଡରୋଭାର ବାହାରିଲା ।

କିଛି ସମୟ ପରେ ଫେରି ଆସିଲା ଗାଡିଟା । ପଛରେ ବନ୍ଧା ହୋଇଛି ଜୀପ୍ । ଡ୍ରାଇଭର ବସିଛି ତା ଜାଗାରେ । ଏମାନେ ଉଠିଗଲେ ବାହାର ବାରନ୍ଦାକୁ ।

ସନିଆ ଏବଂ ଡ୍ରାଇଭର ମିଶି ଜୀପରୁ ବିଛଣା, ସୁଟ୍‌କେଶ ଆଣି ରଖିଲେ ବାରନ୍ଦାରେ । ତା ପରେ ସନିଆ ଗାଡ଼ିଟା ନେଇ ଚାଲିଗଲା ଘରର ପଛ ଆଡକୁ । ଜୀପ

ମଧ ଗଲା ତା ସାଙ୍ଗରେ ବନ୍ଧା ହୋଇ । ସତ୍ୟବ୍ରତ ଆସି ତାର ବର୍ଷାତି ଓ ଗାମ୍‌ବୁଟ ଖୋଲିଲା । ଭୀମକୁ ଜିନିଷପତ୍ର ଘର ଭିତରକୁ ନେଇ ଯିବାକୁ ନିର୍ଦ୍ଦେଶ ଦେଇ ଏମାନଙ୍କୁ ବୈଠକଖାନାକୁ ନେଇ ଆସିଲା ।

ଏଥର ଉଠିଲେ ଭଦ୍ରମହିଳା, ମାନେ ହୃଷୀକେଶ ବାବୁଙ୍କ ଶ୍ୟାଳିକା । ''ମୁଁ ଟିକିଏ ଆସୁଛି '' କହି ତାଙ୍କ ସୁଟ୍‌କେଶଟା ନେଇ ଗାଧୁଆ ଘରକୁ ଚାଲିଗଲେ । ହୃଷୀକେଶ ମଧ ଉଠିଗଲେ । ସତ୍ୟବ୍ରତ ବୁଝିଲା — ଦୁହେଁ ପୁଣି ଲୁଗା ବଦଳେଇବାକୁ ଗଲେ । ଗୋଟାଏ ସିଗ୍ରେଟ ଲଗେଇଲା ସେ । କେଦାର ରାଗର ଗୋଟାଏ ପଦ ତା ଜିଭ ଅଗରେ । ଗୁଣ ଗୁଣ କରି ଗାଇଲା, 'ନନ୍ଦ ନନ୍ଦନ କାହ୍ନାରେ, କାହ୍ନାରେ, କାହ୍ନାରେ ଏ ଏ । '

କିଛି ସମୟ ପରେ ବୈଠକଖାନାକୁ ଆସିଲେ ଭଦ୍ରମହିଳା । ସତ୍ୟବ୍ରତ ଦେଖିଲା ସେ ପିନ୍ଧିଛନ୍ତି ତାଙ୍କର ଯଥାଯଥ ପରିଧେୟ । ଶାଢ଼ିଟା ନୂଆ ଧରଣର । ବେଶ ଯିମିତି ବୈଶିଷ୍ଟ୍ୟ ଅଛି ତାକୁ ପସନ୍ଦ କରି କିଣିବାରେ । ତାର ଶାଲ୍‌ଟା କିନ୍ତୁ ଘୋଡେଇ ହୋଇଛନ୍ତି ଭଦ୍ରମହିଳା, ''ଶାଲ୍‌ଟାର ମମତା ଛାଡ଼ି ପାରିଲି ନାହିଁ । ଭାରି ଭିଜିଛି । ତା ଛଡ଼ା ଶାଲ୍‌ଟା ଭାରି ନରମ, ଭାରି ହାଲୁକା । ''

''ଥାଉନା ଆପଣଙ୍କ ଦେହରେ । ''

''ଆପଣଙ୍କ ଧୋତିଟା କିନ୍ତୁ...''

''ଯାହାର ଧୋତି ସେ ବୁଝିବ । ଆପଣ ନିଶ୍ଚିନ୍ତ ହୁଅନ୍ତୁ ଶ୍ରୀମତୀ ଦେବୀ । ''

''ଶ୍ରୀମତୀ !'' ହସିଲେ ଭଦ୍ରମହିଳା, ''ମୋ ନାଁ ଇନ୍ଦିରା । ''

''ମାଫ୍ କରିବେ ଇନ୍ଦିରା ଦେବୀ । ''

ଏଥର ଆସିଲେ ହୃଷୀକେଶ ଦାସ, ଧୋତି ଆଉ ପଞ୍ଜାବୀରେ । ମୁଣ୍ଡ କୁଣ୍ଡେଇ ଆସିଛନ୍ତି । ''ଆପଣଙ୍କ ଲୁଗାପଟା ଅଯଥାରେ...''

''ଆଉ ସେ କଥା କହି ମୋତେ ଲଜ୍ଜା ଦଉଛନ୍ତି କାହିଁକି ! ସେମାନଙ୍କର ସୌଭାଗ୍ୟ, ଆପଣମାନଙ୍କର ଶ୍ରୀଅଙ୍ଗ ଲାଗି ସେଗୁଡ଼ିକ ଧନ୍ୟ ହୋଇଛନ୍ତି । ''

ସିଧାହୋଇ ବସି କହିଲା ସତ୍ୟବ୍ରତ, ''ପରିଚୟଟା ଏକତରଫା ହୋଇଛି । ମୁଁ ସତ୍ୟବ୍ରତ ଚୌଧୁରୀ । ଏଇ ବଣରେ ଗୋଟାଏ ଫାର୍ମ କରି ରହିଛି । ଅକାଳେ ସକାଳେ ଅତିଥି ଅଭ୍ୟାଗତ ଯେ ନ ଆସନ୍ତି ତା ନୁହେଁ । ସୁତରାଂ ମୋଟା ମୋଟି ହିସାବକରି, ଗୋଟାଏ କୋଠରୀ ଓ କିଛି ବଳକା ବାସନ ରଖିଥାଏ ।'' ଇନ୍ଦିରା ଆଡକୁ ଅନେଇ କହିଲା '' କିନ୍ତୁ ଶାଢ଼ିର ଆବଶ୍ୟକତା ଏ ପର୍ଯ୍ୟନ୍ତ ପଡ଼ି ନ ଥିଲା । ସେଥିଲାଗି ଇନ୍ଦିରା ଦେବୀଙ୍କୁ ଯଥୋପଚାର ଦେବା ସମ୍ଭବ ହୋଇନି ।''

ହସ ଝରେଇ ଥଟ୍ଟା କଲା, ''ଆପଣ ଯେ ପୁରାପୁରି ମଧ୍ୟଯୁଗୀୟ ଭାଷା ବ୍ୟବହାର କରୁଛନ୍ତି । ''

''ମୋ ଭିତରେ ଗୋଟାଏ ମଧ୍ୟଯୁଗୀୟ ମଣିଷ ଅଛି । ରକ୍ତରେ ମୋର ସାମନ୍ତାଭିଜାତ୍ୟର ଧାରା ଅଛି । ''

ଇନ୍ଦିରା କହିଲା, ''ଆପଣଙ୍କ ଚୌଧୁରୀ ଉପାଧି ତ ସେଇ ପରିଚୟ ଦିଏ ।''

''ଚାରି ପୁରୁଷ ଚୌଧୁରୀ ଆମେ, ମୋ ପୁଅକୁ ମିଶେଇ । ''

''ଓ ଆପଣଙ୍କର ପୁଅ ଅଛି ?''

''ଅଛି ଗୋଟିଏ ଇନ୍ଦିରା ଦେବୀ । ''

''କାହିଁ, ଆମେ ତ ଦେଖିଲୁନି ? ଶୋଇପଡ଼ିଛି ?''

''ନା, ସେ ଏଠି ନାହିଁ । ''

''ତା ମାନେ ? ଆପଣଙ୍କ ସ୍ତ୍ରୀ ବାପ ଘରେ ?''

''ନା, ମୋ ସ୍ତ୍ରୀ ପରଲୋକରେ । ''

''ଓ, ହାଓ ସେଡ୍ । '' କହିଲା ଇନ୍ଦିରା । ପଚାରିଲା, ''ଆଉ ପୁଅ ?''

''ସେ ସ୍କୁଲରେ ?''

''ଆପଣ ଏଠି ଏକା ଥାନ୍ତି ?'' ପଚାରିଲେ ହୃଷୀକେଶ ।

''ଆଜ୍ଞା । ''

''ଏଇ ବନବାସର କାରଣ ?''

''କହିଲିତ , ଗୋଟାଏ ସମାଜବାଦୀ ଗଣତନ୍ତ୍ରରେ ଚୌଧୁରୀମାନଙ୍କର ବନବାସ ଛଡ଼ା ଆଉ ଗତି କଣ ?''

''କିନ୍ତୁ, କାହିଁକି ଆପଣ ଏକା, ତାର କାରଣ ତ ଥିବ । '' ଟିପ୍‌ପଣୀ ଇନ୍ଦିରାର । ''ମୁଁ ଏକା ନୁହେଁ ଇନ୍ଦିରାଦେବୀ । ମୁଁ ଥାଏଁ, ଭୀମ,ତାର ସ୍ତ୍ରୀ ଓ ପୁଅ ସନିଆ ଏଠି ରହନ୍ତି । ତା ଛଡ଼ା ମୋର ଅନ୍ୟାନ୍ୟ ଅନେକ ସଙ୍ଗୀ ଅଛନ୍ତି । ଆଜି ଏଇ ବର୍ଷାର ନାନା ବାୟା ଗୀତରେ ସେମାନେ ଶୋଇ ପଡ଼ିବେଣି । କାଲି ସକାଳୁ ଦେଖିବେ । ମୁଁ ଜଣେ ଚାଷୀ । ବସୁନ୍ଧରାକୁ ଦୋହନ କରି ବଞ୍ଚେ । ''

ଭୀମ ପ୍ରବେଶ କରି କହିଲା, ''ଖାଇବାକୁ ଟିକିଏ ଡେରି ହବ । ''

'' ତା ହେଲେ କିଛି ଟିକିଏ ଖିଆଯାଉ । ଆଉ ଚା ଖାଇବା ? '' ପଚାରିଲା ସତ୍ୟବ୍ରତ ।

''ନା-ନା କିଛି ଦରକାର ନାହିଁ । '' ଦୁଇ ଅତିଥି ଆପତ୍ତି ଜଣେଇଲେ ।

ଉଠି ପଡ଼ିଲା ସତ୍ୟବ୍ରତ । ଦୁଇ ମିନିଟ ପରେ ଫେରି ଆସିଲା ଗୋଟାଏ ବିସ୍କୁଟଟିଣ, ଲହୁଣି ଓ ବାତାପି ଛୁରି ଧରି । ବାହାର କଲା ନିମିକି ବିସ୍କୁଟ । ଲହୁଣି ଲଗେଇ ଦେଲା ଅତିଥି ଆଡକୁ ।

''ବେଶ୍ ଲାଗିବ ଏ ପାଗରେ ଚୋବେଇବାକୁ । '' ତିନିଜଣ ଯାକ ଖାଇଲେ । ଇନ୍ଦିରା ଟିଣଟାକୁ ବନ୍ଦ କରି ତା ଉପରେ ଲହୁଣୀ ଡବାଟା ରଖିଦେଲା ।

''ଚୌଧୁରୀମାନେ ଅତିଥି ବତ୍ସଳ ଥିଲେ ନିଶ୍ଚୟ । ଅନ୍ତତଃ, ଆପଣ ତାର ଯଥେଷ୍ଟ ପରିଚୟ ଦେଲେଣି ।'' ଇନ୍ଦିରାର ଉକ୍ତି ।

''ଇନ୍ଦିରାଦେବୀ ! ଖରାପ ଶୁଭିବ ଶୁଣିବାକୁ ଆଜିକାଲି, ବାସୁଦେବ ଚୌଧୁରୀଙ୍କ ଆତିଥ୍ୟର ଗପ ଏବେ ବି ଆମ ଗାଁ ଆଡେ ଲୋକେ କହନ୍ତି । ବାସୁଦେବ ଚୌଧୁରୀ ମୋର ପିତାମହ ଏବଂ ଏଇ ବଂଶର ପ୍ରତିଷ୍ଠାତା । ମୋର ଖବର ଢ଼େର ଦେଲିଣି । ଏଥର ଆପଣଙ୍କ କଥା କହନ୍ତୁ ।'' ଅନେଇଲା ସେ ଇନ୍ଦିରାକୁ ।

''ମୋ କଥା ଆଉ କଣ ?'' ଇନ୍ଦିରା ହସି କହିଲା । ''ଶୁଣିଲେ ତ, ଚାକିରି କରେ । ଗୋଟିଏ ଛୋଟ ଡାକ୍ତରଖାନା, ଗାଁରେ ସେଟା ପୁଣି, ହେଲ୍‌ଥ ସେଣ୍ଟାର । ସେଠି ଥାଏ । ରୋଗୀଙ୍କୁ ଔଷଧପତ୍ର ଦିଏ । ଛୋଟ ଛୋଟ ଅପରେସନ କରେ । ସନ୍ତାନଜନ୍ମକୁ ସହଜ କରି ଲୋକବୃଦ୍ଧିରେ ସାହାଯ୍ୟ କରେ ଏବଂ ଜନ୍ମନିରୋଧ ବିଷୟରେ ବକ୍ତୃତା ଦିଏ ।''

''ବାଃ, ଚମତ୍କାର ବ୍ୟବସ୍ଥା !'' ସତ୍ୟବ୍ରତ କହିଲା ହୃଷୀକେଶଙ୍କୁ ଚାହିଁ । ''ଆପଣଙ୍କ ଅବସ୍ଥା ବିଷୟରେ ମୋର ମୋଟାମୋଟି ଜ୍ଞାନ ଅଛି । ମୋର ଗୋଟିଏ ବନ୍ଧୁ ଆପଣଙ୍କ ଦଳର ।''

''କିଏ — କହନ୍ତୁ ତ ?''

ନାମ କହିଲା ସତ୍ୟବ୍ରତ । ହୃଷୀକେଶ ବୁଝିଲେ ତାଙ୍କ ହାକିମ । ସାବଧାନ ହେଲେ ।

''ଆପଣ ଏଠି କେତେଦିନ ହେଲା ରହିଲେଣି ?''

''ଚାରିବର୍ଷ ।''

''ମୁଁ ଏଇ ବାଟରେ ଅନେକ ଥର ଯାଇଛି । କାହିଁ କେବେ ତ ନଜରରେ ପଡ଼ିନି ଆପଣଙ୍କ ଏ ଘର ।''

''ମୁଁ ବନବାସ କରୁଛି ଆଜ୍ଞା । ଆପଣ ରାସ୍ତାରୁ ମୋତେ ଦେଖିବେ କିମିତି ? ବଡ଼ ରାସ୍ତାରୁ ମୋ ଘର ପ୍ରାୟ ତିନି ଫର୍ଲଙ୍ଗ ବାଟ । ବିରାଟ ବିରାଟ ମହୀରୁହ ମୋତେ ଲୋକଲୋଚନ ଅନ୍ତରାଳରେ ରଖିଛନ୍ତି । ସେଥିଲାଗି ମୁଁ ସେମାନଙ୍କ ନିକଟରେ କୃତଜ୍ଞ ।''

''ଆପଣ ବିଜୁଳି ଶକ୍ତି କଉଠୁ ପାଇଲେ ?''

''ହୀରାକୁଦରୁ ।''

''ଆପଣଙ୍କ ପୁଅ କେତେ ବଡ଼ ?'' ଇନ୍ଦିରା ଟାଣି ନେଇଗଲା ସତ୍ୟବ୍ରତକୁ ତା ଆଡ଼କୁ ।

''ଆଠ ବର୍ଷର ।''

'' ତାର ମା କେବେ...?''

''ସୁବ୍ରତ ସେତେବେଳେ ସାନ ହୋଇଥାଏ । ବର୍ଷକ ଭିତରେ ।''

'' କଣ ହୋଇଥିଲା ?''

''ଡାକ୍ତରମାନେ ବୁଝି ପାରିଲେନି ବୋଲି ମୋର ବିଶ୍ୱାସ । କହିଲେ, ମୁଣ୍ଡରେ ରକ୍ତସ୍ରାବ ।''

''ତା' ପରେ ଆପଣ ଆଉ ବିବାହ କରି ନାହାନ୍ତି ? ''

'' ନା, ସମୟ ପାଇନି । ''

ସନିଆ ମା' ପଶିଆସିଲା, ''ବାବୁ ଟିକିଏ ଆସ । ''

ଉଠିଗଲା ସତ୍ୟବ୍ରତ ପିଣ୍ଡାକୁ । ଗୋଟାଏ ଟେବୁଲ ଉପରୁ ସେ ଦିନର ଖବର କାଗଜ ଟାଣି ନେଲେ ହୃଷୀକେଶ । ଇନ୍ଦିରା ଯାଇ ବସିଲା ରେଡିଓ ପାଖରେ । ସୁଇଚ୍ ଟିପି ଆଲୁଅ ଜାଳିଲା । ଧୀରେ ଧୀରେ ଭାସି ଆସିଲା ଗୋଟାଏ ଭାରି କରୁଣ ରାଗିଣୀ — ବେହେଲାରେ । ବୁଝି ପାରିଲାନି କଉଠୁ ବାଜୁଛି । କେବଳ ମନେ ହେଲା ବିଦେଶୀ ଷ୍ଟେସନ ।

ସତ୍ୟବ୍ରତ ଆସି ଠିଆ ହେଲା ତା ପାଖରେ । ନଇଁପଡ଼ି ଚାହିଁଲା ।

'' କି ଷ୍ଟେସନ ଏଟା ? '' ଇନ୍ଦିରା ପଚାରିଲା ।

''ମସ୍କୋ । ''

ଇନ୍ଦିରା ବସି ବସି ଓ ସତ୍ୟବ୍ରତ ଠିଆ ହୋଇ ଶୁଣିଲେ ବେହେଲା । ବନ୍ଦ ହେଲାରୁ ସତ୍ୟବ୍ରତ ମୁହଁରୁ ବାହାରି ପଡ଼ିଲା, ''ବାଃ । ''

ମୁହଁ ବୁଲେଇ ଚାହିଁଲା ଇନ୍ଦିରା, ''ଆପଣ ବୁଝନ୍ତି ଏ ସଂଗୀତ ? ''

ସିଧା ଠିଆ ହେଲା ସତ୍ୟବ୍ରତ । ଇନ୍ଦିରା ଆଡକୁ ନ ଅନେଇ କହିଲା, ''ଇନ୍ଦିରା ଦେବୀ ! ସାଜିକେଲ ଆଉ ମିଉଜିକାଲ ଯନ୍ତ୍ର ଭିତରେ ତଫାତଟା ଅନେକ ବୋଧହୁଏ ? ନ ହେଲେ ଏ ସଂଗୀତ ତ ବଣର ହରିଣ ଠିଆ ହୋଇ କାନ ଡେରି ଶୁଣିବ । ଆପଣଙ୍କୁ ସଂଗୀତ ଭଲ ଲାଗେନି । ''

''ଜାଣେନି, '' ଅଭିମାନରେ କହିଲା ଇନ୍ଦିରା, ''ଆମ ଜୀବନରେ ସଂଗୀତ ପାଇଁ ଅବସର କାହିଁ ?''

''ଠିକ୍ କହିଛନ୍ତି ଇନ୍ଦିରାଦେବୀ । ସଂଗୀତ ପାଇଁ ଅବସର କାହିଁ, 'ମିଉଜିକ୍ ଇଜ୍ ଡେଡ୍ ' ନା 'ବେରି ଇଟ୍ ଡୀପ୍ ' । କଉଁ ଗୋଟାଏ ସମ୍ରାଟ କହିଥିଲା । '' ଗୋଟାଏ ଦୀର୍ଘ ନିଃଶ୍ୱାସ ବାହାରିଗଲା ସତ୍ୟବ୍ରତ ଛାତିରୁ ।

ସନିଆ ଆସି ଖବର ଦେଲା —''ଖାନା ଦିଆ ହୋଇଛି । ''

## ଦୁଇ

ଖାଇବା ଟେବୁଲରେ ବସିଲା ସତ୍ୟବ୍ରତ — ଦୁଇ ଅତିଥିଙ୍କୁ ଦୁଇ ପାଖରେ ବସେଇ । ଗରମ ଗରମ ପୁରି, ବୁଟଡାଲି ଏବଂ କୁକୁଡ଼ା ମାଂସର ତରକାରି । ହୃଷୀକେଶ ମହା ଆନନ୍ଦରେ ଖାଇବାକୁ ଉଦ୍ୟତ ହେଲେ । ସତ୍ୟବ୍ରତ ନଜର କଲା । ଇନ୍ଦିରା ଖାଉନି ଭଲ କରି । ଅନୁଯୋଗ କଲା, ''ଖାଉ ନାହାନ୍ତି ଯେ ଇନ୍ଦିରା ଦେବୀ । ରନ୍ଧା ଭଲ ହୋଇନି ବୋଧହୁଏ ।''

ହସିଲା ଇନ୍ଦିରା, ''ଆପଣଙ୍କର ବିନୟ ସତରେ ଅପୂର୍ବ । ରନ୍ଧା ଅତି ଚମତ୍କାର ହୋଇଛି ! ଦେଖୁ ନାହାନ୍ତି ମୋର ଭଗ୍ନିପତିଙ୍କୁ ।''

ଦୁଇଜଣ ଚାହିଁଲେ । ହୃଷୀକେଶ ହାଡ ଗୁଡାକୁ ପରିତୃପ୍ତି ସହକାରେ ଚୋବଉଛନ୍ତି ।

''ସେତ ଖାଦ୍ୟର ସଦ୍‌ବ୍ୟବହାର କରୁଛନ୍ତି । '' କହିଲା ସତ୍ୟବ୍ରତ । ''ମୋର ଇଚ୍ଛା ଆପଣ ମଧ୍ୟ ସିମିତି ...''

''ଆପଣ ବୋଧହୁଏ ଜାଣି ନାହାନ୍ତି ଚୌଧୁରୀ ସାହେବ'' ଖାଦ୍ୟଟାକୁ ଗିଳିସାରି ହୃଷୀକେଶ କହିଲେ, ''ଇନ୍ଦିରା ବେଶୀ ଖାଏନି । ତାର ସବୁବେଳେ ଭୟ, ସେ ମୋଟା ହୋଇ ଯାଉଛି ।''

''ଏଇ ଚୁପ୍ !'' ଇନ୍ଦିରା ଆଖିରେ ଶାସନର ଇଙ୍ଗିତ ।

ସତ୍ୟବ୍ରତ ଏଥର ଭଲ କରି ଇନ୍ଦିରାକୁ ଦେଖିଲା । କହିଲା, ''ଡାକ୍ତରୀ ପଢ଼ିଲେ ଏଇ ବିପଦ । ମଣିଷ ଖାଦ୍ୟ ଲୋଡେ ଦେହକୁ ପୁଷ୍ଟ କରିବାକୁ ।''

''ସେ ପୁଷ୍ଟିରେ ମେଦର ସମ୍ଭାବନା ଥାଏ, '' ଇନ୍ଦିରା ଟିପ୍‌ପଣୀ କାଟିଲା । ''ମୋଟା ହେଲେ ମଣିଷର କାମ କରିବାର ଶକ୍ତି କମିଯାଏ ।''

''ଆପଣଙ୍କ ବିଦ୍ୟାରେ ମୋର ପ୍ରବେଶ ନାହିଁ । କିନ୍ତୁ ମୁଁ ଜାଣେ, ଏବେ ଗୋଟାଏ ଫେଶନ ହୋଇଛି ନିଜକୁ ଶୀର୍ଣ୍ଣ କରିବାର ।''

''ଆପଣ ତ ବନବାସୀ, ବିପତ୍ନୀକ । ଏ କଥା କଉଠୁ ଜାଣିଲେ ?'' ପ୍ରଶ୍ନ ଇନ୍ଦିରାର । ''ମାନବ ସଭ୍ୟତା ସାଙ୍ଗରେ ମୋର ସମ୍ପର୍କ ଅଛି ଇନ୍ଦିରା ଦେବୀ । ଏଇ ଘରେ ବସି ମୁଁ ବିଶ୍ୱର ସବୁ ଖବର ପାଏ । ରେଡିଓ ଅଛି, ଖବରକାଗଜ ଆସେ । ତା ଛଡ଼ା ଲୋକାଳୟ ସାଙ୍ଗରେ ସମ୍ପର୍କ ବରାବର ଅଛି । କଟକ ଯାଏ, ଭୁବନେଶ୍ୱର ଯାଏ, କଲିକତା, ଦିଲ୍ଲୀ ଯାଏ ।''

''କଟକ ଗଲେ ଆମ ଘରକୁ ଆସିବେ । '' ନିମନ୍ତ୍ରଣ କଲା ଇନ୍ଦିରା ।

''ଚେଷ୍ଟା କରିବି ।''

ଖିଆ ସାଙ୍ଗରେ ଗପ ଚାଲିଥାଏ । ମିଠା ଆସିଲା, ଚମତ୍କାର ରାବିଡ଼ି, ଛେନାର କିଉବ ସବୁ ପଡ଼ିଛି ସେଥିରେ । ଫ୍ରିଜରୁ କାଢ଼ି ଅଣା ହୋଇଛି । ଇନ୍ଦିରା ବୁଝିଲା, ଲୋକଟା ସୌଖୀନ — ଜମିଦାର ଥିଲା ତ !

ହୃଷ୍ଟଚିତ୍ତରେ ରାବିଡ଼ି ଖାଉ ଖାଉ ହୃଷୀକେଶ ପଚାରିଲେ — ''ଏ ଅମୃତ ପାଇଲେ କଉଠୁ ?''

''ଏଇଠି ମିଳେ । ନ ହେଲେ ଏ ବର୍ଷା ରାତିରେ କଉଠୁ ପା'ନ୍ତି ।''

'' ତା ବି ସତ ।''

ଖିଆ ସରିଲାରୁ ସତ୍ୟବ୍ରତ ଡାକିଲା ଏମାନଙ୍କୁ ବୈଠକଖାନାକୁ । ସେଠି ଦେଖାଗଲା ଗୋଟାଏ ଫିତା ଖଟରେ ବିଛଣା ହୋଇଛି । ତିନିଜଣ ଯାଇ ବସିଲେ, ସତ୍ୟବ୍ରତ କହିଲା, ''ଇନ୍ଦିରା ଦେବୀ ଅନୁମତି ଦେବେ ନିଶ୍ଚୟ ।''

"କି ଅନୁମତି ?"

"ସିଗ୍ରେଟ ଖାଇବି ।"

"ଓ !" ହସିଲା ଇନ୍ଦିରା ।

"ବିନୟତା ମାତ୍ରା ଟପି ଯାଉଛି ବୋଲି ଉପହାସ କରୁ ନାହାନ୍ତି ନିଶ୍ଚୟ ।"

ଇନ୍ଦିରା କ୍ଷୁର୍ଣ୍ଣ ହେଲା କଥାଟାରେ, କହିଲା,

"ଆପଣ ଭାବି ପାରିଲେ ମୁଁ ଆପଣଙ୍କୁ ଉପହାସ କରୁଛି ବୋଲି ।"

"ମୋଟେ ନା —ମନର ଗୋଟାଏ ଅହେତୁକ ଶଙ୍କା ।" ସିଗ୍ରେଟ ଲଗେଇଲା ସତ୍ୟବ୍ରତ, ହୃଷୀକେଶ ମଧ୍ୟ ଲଗେଇଲେ ।

ସନିଆମା ଆସି ଖବର ଦେଲା — ଶଯ୍ୟା ପ୍ରସ୍ତୁତ ।

"ତା ହେଲେ ଆଉ ଡେରି କରିବା କାହିଁକି ? ଆପଣମାନେ କ୍ଳାନ୍ତ ହୋଇଛନ୍ତି ଭିଜିଛନ୍ତି ବି ପ୍ରଚୁର । ଏଥର ବିଶ୍ରାମ କରନ୍ତୁ ।" ସତ୍ୟବ୍ରତ ହୃଷୀକେଶଙ୍କୁ ନେଇଗଲା ସେପଟ ଶୋଇବା ଘରକୁ । ସନିଆ ମା' ବାଟ କଢ଼େଇଲା ଇନ୍ଦିରାକୁ ସତ୍ୟବ୍ରତର ଶୋଇବା ଘରକୁ । ସତ୍ୟବ୍ରତ ହୃଷୀକେଶଙ୍କୁ ସେ ଘରେ ଛାଡ଼ି ବୈଠକଖାନାକୁ ଫେରିଲାରୁ ସନିଆମା କହିଲା, "ଡାକୁଛନ୍ତି ।"

"କିଏ ?"

"ସେଇ ମା' ।"

ଆଗେଇ ଗଲା ସତ୍ୟବ୍ରତ । ତା ଶୋଇବା ଘର ଦୁଆରେ ଠିଆ ହୋଇ ଦେଖିଲା, ଇନ୍ଦିରା ତା ଖଟକୁ ଆଉଜି ଠିଆ ହୋଇଛି । ଖଟରେ ସମ୍ପୂର୍ଣ୍ଣ ନୂତନ ବିଛଣା ହୋଇଛି ।

"ଏ କିନ୍ତୁ ଅନ୍ୟାୟ !" ଅନୁଯୋଗ କଲା ଇନ୍ଦିରା ।

"କି ଅନ୍ୟାୟ ଇନ୍ଦିରା ଦେବୀ ?"

"ଆପଣ ଆମକୁ ଘରଦ୍ୱାର ଛାଡ଼ି ଦେଇ ପଦାରେ ଶୋଇବେ । ଏଇ ବର୍ଷା ରାତିରେ !"

"ମୁଁ ତ ପଦାରେ ଶୋଉନି । ଘରେ ଶୋଉଛି । ଏଇତ ମୋର ବିଛଣା ।"

"କିନ୍ତୁ..."

"ଆଉ କଉଠି ଆପଣଙ୍କୁ ସ୍ଥାନ ଦେବାର ନାହିଁ । ଗୋଟାଏ ରାତି । ଅସୁବିଧାଟା ନିଜ ଗୁଣରେ କ୍ଷମା କରିବେ । ସେଇ ଖଟରେ ଗୋଟାଏ ବୋତାମ ଅଛି । ଦରକାର ପଡ଼ିଲେ ଟିପିଦେବେ । ସନିଆମା ଆସିବ ।"

"ବୋତାମ ? କଉଠି ?" ଇନ୍ଦିରା ଖୋଜିଲା । ପଶିଗଲା ସତ୍ୟବ୍ରତ ଘର ଭିତରକୁ । ବୋତାମ ଟିପି ଦେଖେଇଦେଲା । ଘରୁ ବାହାରି ଆସି କହିଲା, "ଆପଣ ଏଥର ବିଶ୍ରାମ କରନ୍ତୁ ।"

ଚାରି ଆଡକୁ ଚାହିଁଲା ଇନ୍ଦିରା । ପଚାରିଲା, "ଏଟା ଆପଣଙ୍କ ଶୋଇବା ଘର ?"

"ଆଜ୍ଞା ।"

ସତ୍ୟବ୍ରତ ଯେ ତା ନିଜ ଶୋଇବା ଘରଟା ତାର ବ୍ୟବହାର ପାଇଁ ଛାଡ଼ି ଦେଇଛି, ଏଥିରେ ମନେ ମନେ ଖୁସି ହେଲା ଇନ୍ଦିରା । ଦୁଷ୍ଟାମି କରି କହିଲା — ''ଯଦି କିଛି ଚୋରିଯାଏ ?''

ହସିଲା ସତ୍ୟବ୍ରତ ତା କଥାରେ, ''ଚୋର କୁଆଡେ ଯିବ ?''

'' ତା ବି ସତ । ଏ ବଣରୁ ବାହାରିବା କାଠିକର ପାଠ । ''

''ଚୋର ଆସିବ ନାହିଁ । ଆପଣ ନିଶ୍ଚିନ୍ତ ହୋଇ ଶୁଅନ୍ତୁ । ''

''ମୁଁ ଯଦି ଚୋର ହୁଏ ।'' ଇନ୍ଦିରା କହିଲା ।

''କ'ଣ ଚୋରି କରିବେ ଆପଣ ? ଆପଣଙ୍କ କାମରେ ଲାଗିବ, ଇମିତି କିଛି ନାହିଁ ଏ ଘରେ । ''

''କେଜାଣି, କଉ ଜିନିଷ କେତେବେଳେ ଯେ କାହାର କାମରେ ଲାଗେ । ''

''ବେଶ୍ । ସେ ସ୍ୱାଧୀନତା ଆପଣଙ୍କର ରହିଲା । ଆପଣଙ୍କର ଯଦି କିଛି ପ୍ରୟୋଜନରେ ଲାଗେ, ନେବେ । ମୋତେ କହିବା ଦରକାର ନାହିଁ । ''

''ଏକା ବେଳକେ ବ୍ଲାଙ୍କ୍ ଚେକ୍ ଦଉଛନ୍ତି ଯେ ?''

''ଦଉଛି । ''

''ଯଦି ସତରେ ନବାକୁ ଚାହେଁ । '' ଇନ୍ଦିରାର ଆଖି କୌତୁକରେ ଚିକ୍ ଚିକ୍ କରୁଛି ।

''ନେବେ । କହିଛିତ ମୋତେ ପଚାରିବା ଦରକାର ନାହିଁ । ''

''ଏତେ ବିଶ୍ୱାସ ଆପଣ କରୁଛନ୍ତି ମୋତେ ? ମୁଁ ଗୋଟାଏ ଅଜଣା ଲୋକ ଜାଣି ସୁଦ୍ଧା ..... । ''

''କରୁଛି ଇନ୍ଦିରା ଦେବୀ । ''

''ଧନ୍ୟବାଦ, ମନେ ରଖିଲି ଆପଣଙ୍କ କଥା । ''

ହସିଲା ସତ୍ୟବ୍ରତ, '' ତା ହେଲେ ମୋତେ ଛୁଟି ମିଳୁ । ଅବିଶ୍ରାନ୍ତ ବାରିଧାରା ଆପଣଙ୍କ ନିଦକୁ ସ୍ୱପ୍ନହୀନ କରୁ, ଶୁଭରାତ୍ରୀ । ''

ଦୁଆରଟା ଆଉଜେଇ ଆଣିଲା ସତ୍ୟବ୍ରତ । ନିଜ ବିଛଣାରେ ଶୋଇଲା । ସନିଆ ମା ଆଲୁଅ ଲିଭେଇ ଘରୁ ବାହାରିଗଲା ।

## ତିନି

ଖୁବ୍ ଭୋରରୁ ଉଠେ ସତ୍ୟବ୍ରତ । ଏଟା ତାର ସବୁଦିନର ଅଭ୍ୟାସ । ଆଜି ବି ଉଠିଲା । — ମେଘ ଛାଡ଼ି ଯାଇଛି କେତେବେଳେ ରାତିରେ । ଘଡ଼ି ଦେଖିଲା ସେ — ପାଞ୍ଚଟା । ବାହାରକୁ ଆସି ଦେଖିଲା ସନିଆ ମା ଝାଡୁ ଧରି ପହଁରୁଛି । ଭୀମ ରୋଷେଇ ଘରେ ତା ପାଇଁ ଚା' କରୁଛି । ସନିଆ ଗୁହାଳରେ, ତା ରାଇତ୍ୱରେ ଦିନଟା ଆରମ୍ଭ ହୁଏ

ଭୋର ପାଞ୍ଚଟାରୁ । ସମସ୍ତଙ୍କୁ ସେଇ ଅନୁସାରେ କାମକୁ ଆସିବାକୁ ହୁଏ । ଗୋଟାଏ ସିଗ୍ରେଟ ଲଗେଇ ସତ୍ୟବ୍ରତ ଆଗେଇଲା ରୋଷେଇ ଘର ଆଡକୁ । ଭୀମ ବଢ଼େଇ ଦେଲା ଚା ପିଆଲା — ବାମ୍ପ ଉଠୁଛି । ପ୍ରଥମ ଢ଼ୋକଟା ନେଇ ସେ ଅନେଇଲା ଆକାଶକୁ — ବେଶ୍ ଯୋର୍‌ରେ ପବନ ବୋହୁଛି । ମେଘଗୁଡା ତରତରେ ହୋଇ ଭାସି ଯାଉଛନ୍ତି ଆକାଶ ପଥରେ । ପୂର୍ବ ଦିଗଟା ସଫା ହୋଇ ଆସୁଛି । ଭୀମକୁ କହିଲା ସେ, '' ମୁଁ କାମକୁ ଯାଉଛି । ସେମାନେ ଉଠିଲେ ତାଙ୍କୁ ଚା' ଦେବ । ଆଉ ଯଦି କାହାର କିଛି ଦରକାର, ଦବ । ମୁଁ ଶୀଘ୍ର ଫେରି ଆସିବି । ''

ଅଫିସ ଘରକୁ ଆସିଲା । ସେ ସେଇଠି ପିନ୍ଧିନେଲା ପୋଷାକ । ଘୋଡା ନେଇ ସଇସ ଆସିଲାରୁ ଘୋଡା ଚଢ଼ି ବାହାରି ପଡ଼ିଲା ସେ ।

ଗୁହାଳରେ ପହଞ୍ଚିଲାବେଳକୁ ବିଶୋଧିତ ହୋଇ ଦୁଧ ମପା ହେଉଛି । ତାର ନିଜ ବ୍ୟବହାର ପାଇଁ ଦୁଧ ଅଲଗା କରି ରଖାଗଲା । ଯେଉଁ ଦୁଧରୁ ଲହୁଣୀ କଢ଼ା ହେବ, ତାକୁ ପାଖ ଘରକୁ ନିଆଗଲା । କିଛି ଦୁଧ ଛେନା ହବ ତା ପାଇଁ ମଧ ନିର୍ଦ୍ଦେଶ ଦେଲା, ତାପରେ ଘୋଡା ଚଳେଇଲା ବିଲ ଆଡକୁ, ତାର ଧାନ ରୁଆ ଚାଲିଛି । ମୂଲିଆ ମୂଲିଆଣୀ କାମ କରୁଛନ୍ତି, ଗୋଟାଏ କିଆରୀ, ପ୍ରାୟ ପାଞ୍ଚ ଏକର ଜମିରେ; ଆଜି ରୁଆ ହେଉଛି । କୋଡିଏ ଜଣ ଲୋକ କାମ କରୁଛନ୍ତି ।

ମଝିରେ ରାସ୍ତା, ତାର ଦୁଇପଟେ ସରୁ ସରୁ ମାହାରିଆ — ତା ପରେ କ୍ଷେତ । ଗଲା ରାତିର ବୃଷ୍ଟି ଫଳରେ ମାହାରିଆରେ ପ୍ରଚୁର ପାଣି ଚାଲିଛି । ବିଲଗୁଡା ଜଳାଶୟ ହୋଇ ରହିଛି । ଡାହାଣ ପାଖ ବିଲରେ ଦୁଇଦିନ ତଳେ ରୁଆ ହୋଇଥିଲା । ଚାରାଗଛ ଗୁଡ଼ା ସମ୍ପୂର୍ଣ୍ଣ ବୁଡ଼ି ଯାଇଛନ୍ତି । ଘୋଡା ଚାଲିଛି ରାସ୍ତାରେ — ଦେଖି ଦେଖି ଯାଉଛି ସତ୍ୟବ୍ରତ । ଏ ପାଖ ଜମିଟା ଅପେକ୍ଷାକୃତ ଉଚ୍ଚ । ଧାନଗଛ ଗୁଡା ବଡ଼ ବଡ଼ ହୋଇ ଗଲାଣି । ବିଲ ଉଛୁଳି ପାଣି ବୋହି ଯାଉଛି । ଜଳ ନିର୍ଗମ ପଥରେ ଖଇଞ୍ଚି ବସେଇବା ହେତୁ, ଛୋଟ ଛୋଟ ମାଛରେ ସେଗୁଡ଼ିକ ପୂର୍ଣ୍ଣ ହୋଇ ଯାଇଛି ।

ତା' ପରେ ତାର ବନ୍ଧ, ଛୋଟ ବନ୍ଧଟିଏ । ପାର୍ଶ୍ୱବର୍ତ୍ତୀ ଜଙ୍ଗଲରୁ ଯେଉଁ ପାଣି ବୋହି ଆସୁଥିଲା ତାକୁ ବାନ୍ଧିଛି ସେ । ତାର ଚାଷ କାମରେ ସେ ପାଣି ବ୍ୟବହୃତ ହୁଏ । ମାଛ ଛାଡ଼ିଛି — ସେଥିରେ ସେ ବନ୍ଧଟି ପରିପୂର୍ଣ୍ଣ । ଏଇ ବନ୍ଧରୁ ବାହାରିଛି ମାହାରିଆ । ପଥର ଚଟାଣ ଉପରେ ପ୍ରବଳ ବେଗରେ ସୁଅ ଚାଲିଛି ଗୋଳିଆ ପାଣିର । ସତ୍ୟବ୍ରତର ମନେ ହେଲା ବନ୍ଧରୁ ମାଛ ଉଠୁଛନ୍ତି । ଦେଖିଲା ସେ — ବଡ଼ ମାଛର ଖେଳ ନୂଆ ପାଣିରେ । ଗୋଟାଏ ଲୋକକୁ ପଠେଇ ଦେଲା ସନିଆ ପାଖକୁ, ଜାଲ ଆଣିବ । ଉଠି ପଡ଼ିଲା ଘୋଡା ବନ୍ଧ ଉପରକୁ । ବନ୍ଧର ଦକ୍ଷିଣକୁ କଦଳୀ ବଗିଚା, ବାଁ ପଟକୁ ପରିବା ବଗିଚା, ତା ପରେ ତାର ଫଳ ବଗିଚା, ନାନା କିସମର ଆମ୍ବ, ପଣସ, ଲିଚୁ, ବେଲ, ନାନା ଗଛ । ଏଇ

ଖରାଦିନେ ସେ ପ୍ରଥମ ଆମ୍ବ ଅମଳ କରିଛି । ସବୁ ଗଛରେ ଆମ୍ବ ଫଳିନି, ପଣସ ମଧ୍ୟ ଏଥର କଷି ଧରିଥିଲା ।

ଫେରିଲା ସତ୍ୟବ୍ରତ । ଖରା ହେଲାଣି — ବନ୍ଧ ତଳକୁ ଆସି ଦେଖିଲା, ସନିଆ ତିନିଟା ମାଛ ଧରିଛି । ଦୁଇଟା ରୋହୀ, ଗୋଟାଏ ଭାକୁଡ, ପ୍ରତ୍ୟେକଟା ଚାରି କିଲୋରୁ ବେଶୀ ହବ । ମାଛକୁ ଗୋଦାମକୁ ପଠେଇ, ବନ୍ଧ ମୁହଁରେ ଜାଲ ଦେଇ ଘେରି ଦିଆହେଲା, ଜଙ୍ଗଲରୁ ପାଣି ଆସୁଛି ।

ଇନ୍ଦିରା ବାରନ୍ଦାରେ ଠିଆ ହୋଇ ଦେଖୁଥାଏ ସତ୍ୟବ୍ରତକୁ । ଘୋଡାଚଢ଼ି ଆସୁଛି ସେ, ଦେହରେ ତାର ଖାକି ବ୍ରୀଚେସ୍ ଓ ଶାର୍ଟ । ଗୋଡରେ ବୁଟ୍, ମୁଣ୍ଡ ଖୋଲା — ବାଳଗୁଡା ପବନରେ ଫୁରଫୁର ହୋଇ ଉଡୁଛି । ସତ୍ୟବ୍ରତ ଯେ ସୁପୁରୁଷ ଏ କଥା ନିଃସନ୍ଦେହରେ କୁହାଯାଇପାରେ । ଛଫୁଟ ଲମ୍ବା ସୁସ୍ଥ ସବଳ ମଣିଷ । କାନ୍ଧଗୁଡା ବେଶ ଚଉଡା, ମୁହଁ, ଆଖି, ନାକ, ନିଖୁଣ, ହାତଗୁଡା ବେଶ୍ ଲମ୍ବା ଲମ୍ବା । ଦେହର ଗଣ୍ଠିଟା ବେଶ୍ ଟାଣ । ଡାକ୍ତରୀ ଆଖିଦେଇ ସେ ଦେଖିଲା ସତ୍ୟବ୍ରତକୁ । ଘୋଡାରୁ ଓହ୍ଲେଇ ଲଗାମଟା ସଇସକୁ ଦେଇ ଆଗେଇ ଆସିଲା ସତ୍ୟବ୍ରତ ।

"ସୁପ୍ରଭାତ ଇନ୍ଦିରାଦେବୀ । ରାତିରେ ନିଦ ହୋଇଥିଲା ତ ?"

"ନା । " ମୁହଁ ଶୁଖେଇ କହିଲା ଇନ୍ଦିରା ।

"କାହିଁକି ? କିଛି ଅସୁବିଧା ...?" ପଚାରିଲା ସତ୍ୟବ୍ରତ ।

ଏଥର ହସି ପକେଇଲା ଇନ୍ଦିରା । କହିଲା — "ଏମିତି ତୂଳିତଳ୍ପରେ ଯେ ଜୀବନରେ କେବେ ଶୋଇନି, ତାକୁ ଶୋଇବାକୁ ଦେଲେ ତାର ନିଦ ହବ ? ମୁଁ ତ ରାତିସାରା ଭାବୁଛି; ଆପଣ କେମିତି ଶୋଇଲେ ?"

"ମୁଁ ? ମୋ କଥା କାହିଁକି ପଚାରୁଛନ୍ତି ? ମୁଁ ଗୋଟାଏ ଚଷା — ହେଁସ ଖଣ୍ଡେ ହେଲେ ଯଥେଷ୍ଟ । "

"ଆପଣଙ୍କ ହେଁସଟି ଛ ଇଞ୍ଚ ମୋଟା — ଫୋମ୍ ରବରର ଏକଥା ଥାଉ କିଏ ନ ଜାଣୁ, ମୁଁ ଜାଣେ । "

ସନିଆ ଦି'ଟା ବେତ ଚୌକି ପକେଇ ଦେଲା । ଇନ୍ଦିରାକୁ ବସିବାକୁ କହି ନିଜେ ବସିଲାରୁ ସନିଆ ନଇଁପଡ଼ି ତାର ବୁଟ ଓ ବ୍ରିଚେସ୍ ଖୋଲିଦେଲା । କାଲି ରାତିର ଗେଞ୍ଜି ଓ ପାଇଜାମା ସତ୍ୟବ୍ରତ ଦେହରେ । ପଞ୍ଜାବୀଟା ଆଣି ଦେଲାରୁ ସେ ପିନ୍ଧିନେଲା ।

"ଆପଣଙ୍କ ଲକ୍ଷ୍ମୀପତି ?"

"ଗାଡି ଠିକ୍ ହେଲା କି ନା ଦେଖୁଛନ୍ତି । "

" ଚା ଖାଇଛନ୍ତି ?" ପଚାରିଲା ସତ୍ୟବ୍ରତ ।

"ହୁଁ । "

''ଆଉ ପିଆଲେ ଖାଇବାକୁ ଆପତ୍ତି ଅଛି ? ଆପଣ ଖାଇଲେ ମୁଁ ପାନ୍ତି । ''

ହସି ଉଠିଲା ଇନ୍ଦିରା କିର୍ କିର୍ ହୋଇ ।

''ଆପଣଙ୍କ ଘରେ ଆପଣ ଚା ଖାଇବେ । ମୋ ଖାଇବା ସାଙ୍ଗରେ ତାର ସମ୍ପର୍କ କ'ଣ ?''

''ଆପଣ ଅତିଥି ଯେ । ଆପଣଙ୍କୁ ନ ଦେଇ ଖାଇବି, ଏତେ ବଡ଼ ବର୍ବର ମୁଁ ନୁହେଁ । କି ହୁକୁମ ? ଚା ଆସିବ ?''

''ବାରେ ଆସୁ, । ଆପଣତ ଖାଇବେ । '' ଗେହ୍ଲେଇ ହେଲା ଇନ୍ଦିରା ।

''ହଁ, ଆପଣ ଯଦି ଦିଅନ୍ତି । ''

ଗୋଟାଏ ଟିପୟ ଆଣି ରଖିଲା । ଭୀମ ଆଣିଲା ଚା ଟ୍ରେ । ଇନ୍ଦିରା ନିଶବ୍ଦ ହୋଇ ବସିଥାଏ । ତାକୁ ଅନେଇ ମୁରୁକି ହସି କହିଲା ସତ୍ୟବ୍ରତ, ''ଚା ଦେବେ ଯେ ? ଥଣ୍ଡା ହୋଇଗଲାଣି । ''

ଚା କରି ଦେଲା ଇନ୍ଦିରା । ଗୋଟାଏ ପିଆଲା ସତ୍ୟବ୍ରତକୁ, ଗୋଟାଏ ପିଆଲା ଗଲା ହୃଷୀକେଶଙ୍କ ପାଇଁ ଓ ନିଜେ ମଧ୍ୟ ନେଲା ।

''କୁଆଡେ ଯାଇଥିଲେ ସକାଳୁ ଘୋଡା ଚଢ଼ି ?''

''ଯୁଦ୍ଧକୁ । ''

''ଯୁଦ୍ଧକୁ ? କି ଯୁଦ୍ଧ ? ''

''ପ୍ରକୃତି ସାଙ୍ଗରେ ଯୁଦ୍ଧ ଇନ୍ଦିରା ଦେବୀ । ମୋର ଏଇ ଫାର୍ମରେ ଗୋଟିଏ ଜଳାଶୟ ଅଛି । କାଲି ରାତିର ପ୍ରବଳ ବର୍ଷାରେ ତାର ଅବସ୍ଥା କ'ଣ ହୋଇଛି ଦେଖିବାକୁ ଯାଇଥିଲି ।''

''ବନ୍ଧ ଭାଙ୍ଗିନି ତ ? ''

'' ନା, ଖୁବ୍ ଶକ୍ତ କରି ବାନ୍ଧିଛି ମୁଁ । ତଥାପି କହିହେବ ନାହିଁ । ପାଣି ଆଉ ନିଆଁକୁ ଅକ୍ତିଆର କରିବ, ଏମିତି ଶକ୍ତି ଆଜିଯାକେ ବିଜ୍ଞାନ କାଢ଼ି ପାରିନି । ''

ଦାଣ୍ଡ ପଟରୁ ବସିବା ଘର ଦେଇ ପଶି ଆସିଲେ ହୃଷୀକେଶ, '' ଗୁଡମର୍ଣ୍ଣିଂ ମିଷ୍ଟାର ଚୌଧୁରୀ । ''

ପଛକୁ ଚାହିଁଲା ସତ୍ୟବ୍ରତ, '' ଆରେ ଆସନ୍ତୁ, ଆସନ୍ତୁ । ତା ପରେ କାଲି ରାତିରେ ନିଦ ଭଲ ହୋଇଥିଲା ତ ?''

'' ସେ କଥା କହିବାକୁ ଅଛି । ଆପଣଙ୍କ ଅନୁଗ୍ରହରେ ଆଶ୍ରୟ, ଆହାର, ନିଦ୍ରା ସବୁ ଠିକ୍ ହେଲା । କିନ୍ତୁ ଗାଡି ବିଗିଡ଼ି ଯାଇଛି । ''

''କ'ଣ ହୋଇଛି ଗାଡିର ?''

''କଏଲ ଜଳି ଯାଇଛି । ''

ସତ୍ୟବ୍ରତ ଉଠି ଠିଆ ହେଲା, '' ମୁଁ ଟିକିଏ ଦେଖି ଆସୁଛି ଇନ୍ଦିରା ଦେବୀ, — ମିନିଟିଏ । ''

ବାହାରିଗଲେ ଦୁଇଜଣ । ଦାଣ୍ଡରେ ଜିପ୍‌ର ବନେଟ୍ ଖୋଲି ଡ୍ରାଇଭର କ'ଣ ଦେଖୁଛି । ସତ୍ୟବ୍ରତକୁ ଦେଖି ସଲାମ୍ ଦେଲା ।

" ଚା ଖାଇଛ ? " ସତ୍ୟବ୍ରତ ପଚାରିଲା ।

"ଖାଇଛି ସାର୍ । "

"ଗାଡି କ'ଣ ହେଲା ?"

'ଡାଇନାମୋର କଏଲ ଜଳି ଯାଇଛି । କାରଖାନାକୁ ନବାକୁ ହବ । "

"ବେଶତ, ଏଇ ତ ଅନୁଗୁଳ । ଛ' ମାଇଲ ବାଟ । ମୋର ଗାଡି ଯିବ । ତୁମକୁ ଟାଣି ନେଇ ପହଞ୍ଚେଇ ଦବ ଗୋଟାଏ କାରଖାନାରେ ! ତୁମେ ଗାଡ଼ି ଠିକ୍ କରି ନବ । "

" ତା ହେଲେ ଆମେ ଯିବା କେତେବେଳେ ? " ହତାଶାର ଚିହ୍ନ ହୃଷୀକେଶଙ୍କ ମୁହଁରେ ।

" ଗାଡି ଠିକ୍ ହେଇଗଲେ... । " ହସି କହିଲା ସତ୍ୟବ୍ରତ ।

"କେତେ ସମୟ ଲାଗିବ ଗାଡି ଠିକ୍ ହବାକୁ ?" ହୃଷୀକେଶ ପଚାରିଲେ ଡ୍ରାଇଭରକୁ ।

"ଦୁଇ ତିନି ଘଣ୍ଟା ଲାଗିବ ।"

କ'ଣ ଭାବିଲେ ହୃଷୀକେଶ, କହିଲେ, "ଚାଲ, ମୁଁ ବି ଯିବି । ଆମର ବିଭାଗୀୟ ଗାଡି ଅଛି ସେଠି । ଯେତେ ଶୀଘ୍ର ସମ୍ଭବ ଠିକ୍ କରି ନବାକୁ ହବ । "

" ତା ହେଲେ ଆପଣ କିଛି ଟିକିଏ ଖାଇ ନିଅନ୍ତୁ । ଡ୍ରାଇଭର ବି ଖାଇ ନଉ ।" ସତ୍ୟବ୍ରତ ପ୍ରସ୍ତାବ ଦେଲା ।

"ନା ନା, କିଛି ଦରକାର ନାହିଁ । ଜଲ୍‌ଦି ଗାଡି ଠିକ୍ ହବା ଦରକାର । ମୁଁ ବରଂ ଗାଧୋଇ ପଡେଁ । "

"ବେଶ୍ ତ । ଆପଣଙ୍କ ଗାଧୁଆ ଘରେ ସବୁ ଠିକ୍ ଅଛି । ଯାନ୍ତୁ ଗାଧୋଇ ପଡ଼ନ୍ତୁ । "

ପଶି ଆସିଲେ ଦୁଇ ଜଣ ଭିତର ବାରନ୍ଦାକୁ, ଇନ୍ଦିରା ବସିଛି ସେଇଠି ।

"ବୁଝିଲ ଚୁନି... । " ହୃଷୀକେଶ ଆରମ୍ଭ କଲେ, "ମୁଁ ଟିକିଏ ଅନୁଗୁଳ ଯାଉଛି । ଗାଡିଟା ଠିକ୍ କରିବାକୁ ହବ । ଯେତେ ଶୀଘ୍ର ସମ୍ଭବ, ଠିକ୍ କରି ଆଣିଲେ ଆମେ ଏଠୁ ବାହାରିବା । ଇନ୍ଦିରା ସମ୍ମତି ଦେଲା ।

"ତୁମେ ଏଠି ମିଷ୍ଟାର ଚୌଧୁରୀଙ୍କ ..."

"ଏତ ପରମ ସୌଭାଗ୍ୟ ହୃଷୀକେଶ ବାବୁ " କହିଲା ସତ୍ୟବ୍ରତ । "ଇନ୍ଦିରା ଦେବୀଙ୍କ କୌଣସି ଅଯତ୍ନ ହବନି । ଆପଣ ଗାଡି ଠିକ କରି ଆଣନ୍ତୁ । "

" ତା ହେଲେ ମୁଁ ପ୍ରସ୍ତୁତ ହୁଁଏ, ନା କ'ଣ ?" ତରତର ହୋଇ ଘର ଭିତରକୁ ପଶିଲେ ହୃଷୀକେଶ ।

''ଭାରି ତୁରୁତୁରିଆ ଲୋକ ତ ?'' ହସି ପଚାରିଲା ସତ୍ୟବ୍ରତ ।

''ହଁ, ନାନୀଙ୍କୁ ଭାରି ଡର ତାଙ୍କର । ନାନୀଙ୍କୁ ଛାଡ଼ି ସେ ରହି ପାରନ୍ତିନି । '' ହସି ଉତ୍ତର ଦେଲା ଇନ୍ଦିରା ।

''ଓ, ସତେ !'' ତାପରେ କହିଲା ସତ୍ୟବ୍ରତ, '' ମୋର ଯେ ଟିକିଏ କାମ ଅଛି ଇନ୍ଦିରା ଦେବୀ । ମୋତେ ଅଫିସକୁ ଯିବାକୁ ହବ । ଜାଣନ୍ତି ତ — ଚଷାଲୋକ । ଶସ୍ୟ ବିକିଲେ ଦିନ ଗୁଜରାଣ ହବ । ''

''ଅଫିସ?'' ପଚାରିଲା ଇନ୍ଦିରା, ''ସେଟା କଉଠି ?''

''ଏଇଠି ପାଖରେ । ଆସନ୍ତୁନା, ସେଠି ବସି ଗପ କରିବା — ମୋର କାମ ମଧ ହବ । ''

''ସେଠି ବହୁତ ଲୋକବାକ...'' କୁଣ୍ଠିତ ହେଲା ଇନ୍ଦିରା ।

'' ନା, କେହି ନାହିଁ । ଆସନ୍ତୁ । ''

ଉଠିଲେ ଦିଜଣ । ସନିଆକୁ ଡାକି ସତ୍ୟବ୍ରତ କହିଲା — ହୃଷୀକେଶ ଓ ଡ୍ରାଇଭରଙ୍କୁ ଜଳଖିଆ ଦବାକୁ । ସେମାନେ ଏଇଖିଣି ଯିବେ ଅନୁଗୁଳ । ଜୀପ୍‌ଟା ତା ଗାଡିରେ ବନ୍ଧା ହୋଇ କାରଖାନାକୁ ଯିବ ।

ଇନ୍ଦିରାକୁ ନେଇ ସେ ଅଫିସରେ ପହଞ୍ଚିଲା । ଦୁଇ ମିନିଟରେ ପଥ । ଅଫିସ ଘରଟି ସୁନ୍ଦର । ଟେବୁଲ ଚେୟାର ପଡ଼ିଛି । ଲୁହା ଆଲମାରି ଗୋଟାଏ । ଥାକରେ ସଜା ହୋଇଛି ଫାଇଲ । ଟାଇପ୍ ରାଇଟାର ଗୋଟିଏ ଅଛି । କାନ୍ଥରେ ପୋତା ହୋଇଛି ଗୋଟିଏ ଲୌହ ସିନ୍ଦୁକ । ପନ୍ଦର ମିନିଟ୍ ଭିତରେ ସତ୍ୟବ୍ରତର କାମ ସରିଗଲା । ଅଫିସରୁ ବାହାରି ଆସିଲେ ଦୁଇଜଣ ।

ଅଫିସ ଘର ସଂଲଗ୍ନ ଗୋଟାଏ ଲମ୍ବା ଟିଣ ଛପର ଗୋଦାମ । ସେଠି ଜମା ହୋଇଛି ପରିବାପତ୍ର । ସେଇ ମାଛ ତିନିଟା ଥୁଆ ହୋଇଛି । ଆଉ ଦୁଧର ବଡ଼ ବଡ଼ ଆଧାର, ଗୋଟାଏ ବାଲତିରେ ଛେନା, ଝୁଡିରେ ଝୁଡିଏ ଅଣ୍ଡା । ଗୋଟାଏ ରୋହୀମାଛ ଘରକୁ ପଠେଇ ଦବାକୁ କହିଲା ସତ୍ୟବ୍ରତ । ବାକି ସବୁ ଯିବ ଅନୁଗୁଳ ବଜାରକୁ ।

''ଏଇଟା କୋଲ୍‌ଡ ଷ୍ଟୋରେଜ୍ '' କହିଲା ସତ୍ୟବ୍ରତ । କବାଟ ଖୋଲି ଦେବାରୁ ଝଲକାଏ ଥଣ୍ଡା ପବନ ବାଜିଲା ଇନ୍ଦିରାର ଦେହ ଓ ମୁହଁରେ । ସେ ଦେଖିଲା କୁଡ଼ ହୋଇଛି, ଆଳୁ, ପିଆଜ, ଗହମ, ଧାନ, ମହଣ ମହଣ । ବେତ ଓ ବାଉଁଶ ପାଛିଆ ଅନେକ ଗୁଡାଏ । ସେଥିରେ ସବୁ ଜଣ ଅଛି ।

''ଆସନ୍ତୁ ଭିତରକୁ '' ଡାକିଲା ସତ୍ୟବ୍ରତ । ଇନ୍ଦିରା ପଶିଲାରୁ କବାଟ ବନ୍ଦ କରିଦେଲା ସେ । ଘୁରି ଘୁରି ସବୁ ଦେଖିଲା ଇନ୍ଦିରା । କାନ୍ଥରୁ ଥାକ ବାହାରିଛି ଧାଡ଼ି ଧାଡ଼ି । ବିହନ ରଖା ହୋଇଛି ପାଛିଆରେ ।

ଘରୁ ବାହାରିଲାରୁ ସତ୍ୟବ୍ରତ ଡାକିଲା, ''ଚାଲନ୍ତୁ ମୋର ପୋଲଟ୍ରି ଦେଖିବେ।''

ପ୍ରାୟ ଅଧ ଏକର ଜମିକୁ ଗୋଟା ତାର ଜାଲ ଦେଇ ଘେରାଇଛି ସତ୍ୟବ୍ରତ। ଚକ ଚଟାଣ ପଥରର। ପଥର ମଝିରେ ମଝିରେ ଘାସ। ଛୋଟ ଛୋଟ କାଠର ଘର ଗୁଡ଼ିଏ। ସେଇ ଜାଲିଘର ଭିତରେ ଚରୁଛନ୍ତି ଲାଲ ଆଉ ଧଳା ରଙ୍ଗର ଅନେକ କୁକୁଡ଼ା। ଗୋଟିଏ ଲୋକ ଗହମ ଓ ଧାନର ପାଛିଆ ଧରି ଖୁଆଉଥିଲା କୁକୁଡ଼ାଙ୍କୁ। ସତ୍ୟବ୍ରତ ମୁଠାଏ ଗହମ ଧରି ଡାକିଲା, ''ରାଜା।'' ଦଉଡ଼ି ଆସିଲା ଗୋଟାଏ ବଡ଼ ଗଞ୍ଜା, ଲାଲ ରଙ୍ଗର। ଦେହଠୁଁ ବଳି ଲାଲ୍ ତାର ଚୂଳ। ତା' ପରେ ଡାକିଲା ସତ୍ୟବ୍ରତ, ''ଭାଲୁ।'' ଏଥର ଆସିଲା ଗୋଟାଏ ଧଳା ଗଞ୍ଜା, କକକ କରି।

''ବାଃ, ଏମାନେ ଆପଣଙ୍କ କଥା ବୁଝନ୍ତି ?'' ଇନ୍ଦିରା ପଚାରିଲା।

''ହଁ। ଏଇ ଦୁଇଟା ପ୍ରଥମରୁ ଏଠି ଅଛନ୍ତି। ଦୁଇଟା କରି ମାଈ ଆଉ ଗୋଟିଏ କରି ଗଞ୍ଜା, ଇମିତି ଛ'ଟା କୁକୁଡ଼ା ନେଇ ଆରମ୍ଭ କରିଥିଲି ମୋର ପୋଲଟ୍ରି।''

''ବର୍ତ୍ତମାନ କେତେ ହେଲେଣି ?''

''ଆପଣ ଅନୁମାନ କଲେ ?''

''ଚାହିଁଲା ଇନ୍ଦିରା ଚରୁଥିବା କୁକ୍‌କୁଟ ଦଳକୁ। କହିଲା, ''କେତେ ହେବେ, ଦୁଇଶ।''

ହସିଲା ସତ୍ୟବ୍ରତ, '' ନା , ପାଞ୍ଚଶରୁ ବି ବେଶି।''

''ସେଇ ଛ'ଟା କୁକୁଡ଼ାର ବଂଶଧର ଏମାନେ ? '' ଇନ୍ଦିରା କଣ୍ଠରେ ଅବିଶ୍ୱାସ।

ହୋ ହୋ କରି ହସିଉଠିଲା ସତ୍ୟବ୍ରତ।

''ଅର୍ଥନୀତିରେ ମେଲଥସ ବୋଲି ଜଣେ ପଣ୍ଡିତଙ୍କ ବହି ପଢ଼ିଥିଲି।''

''ଶୁଣିଛି ତାଙ୍କର ପପୁଲେଶନ ଥିଓରି'', ହସି ଜବାବ ଦେଲା ଇନ୍ଦିରା।

''ଜାଣନ୍ତି ତାହେଲେ। କିନ୍ତୁ ମଣିଷ ପରି କୁକୁଡ଼ା ଜ୍ୟାମିତିକ ଅନୁପାତରେ ବଢ଼େ ନାହିଁ। ତାର ଶତ୍ରୁ ଅନେକ। ଚିକେନ୍ ପକ୍‌ସଟା ଆପଣଙ୍କର ଏଇ କୁକୁଡ଼ା ପାଖରୁ ଆରମ୍ଭ ବୋଲି ମୋର ବିଶ୍ୱାସ। ତା' ଛଡ଼ା ଝାଡା ରୋଗ ଅଛି। ପୋକ, ଉକୁଣି ଅଛନ୍ତି।''

''ତାହେଲେ ଏତେ କୁକୁଡ଼ା ଆସିଲେ କଉଠୁ ?''

''କିଣା ହୋଇଛନ୍ତି।''

ଆଗେଇ ଗଲେ ସେମାନେ।

''ଏଟା ଇନକିଉବେଟାର'' କହିଲା ସତ୍ୟବ୍ରତ। ''ଆପଣତ ଡାକ୍ତର, ଏଗୁଡ଼ା ବହୁତ ଦେଖିଥିବେ।''

ଗୋଟାଏ ବଡ଼ ଲୁହାର ଫାଟକ ଖୋଲି ପଶିଲେ ସେମାନେ। ଘରର ଦୁଇ ପାଖରେ ବନ୍ଧା ହୋଇଛନ୍ତି ଗାଈ। ଗୁହାଳ ଯେ ଏତେ ପରିଷ୍କାର ହୋଇପାରେ, ଇନ୍ଦିରା ଏଇ ପ୍ରଥମ

ଦେଖିଲା । ମଳମୂତ୍ରର କୌଣସି ଚିହ୍ନ ନାହିଁ । ଝମା ଇଟାର ଚଟାଣ । ସେଥିରେ ମଝିରେ ମଝିରେ ଲୁହାର ଜାଲି ଦେଇ ବାଟ କରିଦିଆଯାଇଛି । ପାଣି ପାଇପରୁ ଲମ୍ବା ଲମ୍ବା ରବରର ଟିଉବ ବାହାରିଛି । ଧୂଆ ହୁଏ ଗୁହାଳ । ମସ୍ତ ମୋଟା ମୋଟା ଗାଈ ବନ୍ଧା ହୋଇଛନ୍ତି — ବାରଟା, ଦୁଇ ଧାଡ଼ିରେ । ବାଛୁରୀଙ୍କ ପାଇଁ ପ୍ରତ୍ୟେକ ଗାଈ ପାଖରେ ଛୋଟ ଛୋଟ କୋଠରୀ । ବାଛୁରୀକୁ ମା' ଦେଖିବ, କିନ୍ତୁ ଦୁଧ ଦେବାର ଉପାୟ ନାହିଁ । ଖୁସି ହୋଇଗଲା ଇନ୍ଦିରା ।

''ଏ ଗାଈ ସବୁ ଆପଣ କଉଠୁ ପାଇଲେ ? ''

''କିଣିଛି । ସେଇ ହରିଆନା ଗାଈ ଦି'ଟା ଦେଢ଼ ହଜାର ଟଙ୍କା । ସିନ୍ଧୀ ଗାଈ ଅଛନ୍ତି ଛ'ଟା । ସେଥିରୁ ଚାରିଟା କିଣିଛି । ଗୋଟାକ ଚାରିଶ ଟଙ୍କା କରି । ଆମର ଦେଶୀ ଗାଈ ପାଞ୍ଚଟା । ସେଥିରୁ ଦୁଇଟା କିଣା, ବାକି ଦି'ଟା ବାଛୁରୀ । ''

''କେତେ ଦୁଧ ଦିଅନ୍ତି ଏମାନେ ? ''

''ସକାଳ ଉପର ଓଳି ମିଶି ପ୍ରାୟ ଦୁଇ ମହଣ । ''

''ଦୁଇ ମହଣ ଦୁଧ ? କ'ଣ କରନ୍ତି ମିଷ୍ଟର ଚୌଧୁରୀ । '' ଇନ୍ଦିରାର ଚକ୍ଷୁ ବିସ୍ଫାରିତ ।

''ପିଏଁ । '' ସତ୍ୟବ୍ରତର ସହାସ୍ୟ ଉତ୍ତର ।

''ନା, ସତରେ କଣ କରନ୍ତି, ଏତେ ଗୁଡାଏ ଦୁଧ ? ''

''ଆହୁରି ଅଛି ? ଆସନ୍ତୁ । ''

ନେଇଗଲା ସେ ଇନ୍ଦିରାକୁ ମଇଁଷି ଗୁହାଳକୁ । ମଇଁଷି ଅଛ - ପାଞ୍ଚଟା । ଗୁହାଳଟା କିନ୍ତୁ ଅନୁରୂପ ସଫା ।

''ଏଠୁ କେତେ ଦୁଧ ମିଳେ ? '' ଇନ୍ଦିରା ପଚାରିଲା ।

''ପ୍ରାୟ କୋଡ଼ିଏ ଲିଟର । ''

'' ତା' ମାନେ ଅଢ଼େଇ ମହଣ ଦୁଧ ? ମାଇଁ ଗଡ୍ । କ'ଣ ହୁଏ, ଏ ସବୁ ? '' ଇନ୍ଦିରାର ବିସ୍ମୟ ସୀମା ଟପି ଯାଉଛି ।

''ଚାଲନ୍ତୁ ଦେଖିବା କ'ଣ ହୁଏ ? ''

ଗୁହାଳକୁ ଲାଗି ଗୋଟାଏ ହଲ୍ । ଅନେକ ଗୁଡାଏ ଯନ୍ତ୍ର ବସିଛି । ଚାରି ପାଞ୍ଚଜଣ ଲୋକ କାମ କରୁଛନ୍ତି । ସତ୍ୟବ୍ରତକୁ ଦେଖି ସେମାନେ ନମସ୍କାର କଲେ ।

''ଏଠି ଦୁଧକୁ ବିଶୋଧନ କରାଯାଏ,'' ବୁଝେଇ ଦେଲା ସତ୍ୟବ୍ରତ । ଦୁଧକୁ କିମିତି ଗରମ କରିସାରି ପାଇପ୍ ଭିତର ଦେଇ ଖୁବ୍ ଥଣ୍ଡାକୁ ନିଆଯାଏ ।

''ଏଟା ଲହୁଣୀ କାଢ଼ିବାର ଯନ୍ତ୍ର । ''

ଦେଖିଲା ଇନ୍ଦିରା, ଦୁଧ ମୁହାଁ ହେଉଛି ଏଠି । ଗୋଟାଏ ମୁହଁରେ ବହଳିଆ ଲହୁଣି ବାହାରୁଛି । ତାକୁ ନିଆଯାଇ ଗୋଟାଏ ଶୀତଳ ଜାଗାରେ ରଖିବା ଫଳରେ ବସି ଯାଉଛି

ସେ ଲହୁଣି । ତା' ପରେ ଟିଣ ଓ କାଗଜ ଖୋଳରେ ତାକୁ ବନ୍ଦ କରାଯାଉଛି । ଡିବା ଗୁଡିକରେ ଛାପା ହୋଇଛି, ''ସୁବ୍ରତ ବାଟାର ।'' ଇନ୍ଦିରା ବୁଝିଲା, କଟକରୁ ସେ ଯେଉଁ 'ସୁବ୍ରତ ବାଟାର' କିଣେ, ତାର ମୂଳ କେଉଁଠି ?

ଜଣେ କର୍ମଚାରୀ ଗୋଟିଏ ଟ୍ରେରେ ଦୁଇ ପିଆଲା ଦୁଧ ଆଣି ଠିଆ ହେଲା । ସତ୍ୟବ୍ରତ ଗୋଟିଏ ପିଆଲା ଇନ୍ଦିରାକୁ ଦେଇ ନିଜେ ନେଲା ଅନ୍ୟଟିକୁ । ''ଖା'ନ୍ତୁ, ଆପଣ ବିଶ୍ୱାସ କରୁ ନ ଥିଲେ ତ । ଦେଖିଲେ ମୁଁ ପିଏଁ । '' ହସିଲା ଇନ୍ଦିରା । ଗରମ ଦୁଧରେ ଓଠ ଲଗେଇଲା । ଅପୂର୍ବ ସ୍ୱାଦ । ସେ ଯେ ଇମିତି ଦୁଧ କେବେ ଖାଇଛି ମନେ ପଡ଼ିଲାନି ତାର ।

ଫେରିଲେ ସେମାନେ । ବାଟରେ ଗୋଟାଏ ବିରାଟ କୂଅ, ଆଠ ଫୁଟ ତାର ବ୍ୟାସ । ପମ୍ପରେ ପାଣି ଉଠୁଛି ଗୋଟାଏ ଟାଙ୍କିକୁ । ସେଠୁ ଚାରି ଆଡ଼କୁ ଯାଇଛି ପାଇପ୍ । ସୁ ସୁ କରୁଛି ପମ୍ପଟା । ସେଠି ବସିଛି ଜଣେ ଲୋକ ।

ଫୁଲ ବଗିଚାର ଶେଷରେ ଯାଇ ଠିଆ ହେଲେ ଦୁଇଜଣ । ଗୋଟାଏ ସିମେଣ୍ଟର ବେଞ୍ଚ । ତା' ପରେ ଆରମ୍ଭ ହୋଇଛି ବିଲ । ପ୍ରାୟ ଚାରି ପାଞ୍ଚ ଫୁଟ ତଳକୁ ।

''ସେଇ ଯେ ବନ୍ଧଟା ଦେଖୁଛନ୍ତି ସେଇଟା ମୋର ଜଳାଶୟ, ତା ସେ ପଟକୁ ବଗିଚା । ''

ଘଡ଼ି ଦେଖିଲା ସତ୍ୟବ୍ରତ, '' ଏ ହେ ହେ ଦେଖୁଛନ୍ତି , ନ'ଟା କେତେବେଳେ ବାଜି ଗଲାଣି । ଆପଣଙ୍କୁ ଅସୁବିଧାରେ ପକେଇଲି । ''

ତା ଆଡକୁ ଚାହିଁଲା ଇନ୍ଦିରା । ଦୁଇ ଆଖିରେ ସପ୍ରଶଂସ ଦୃଷ୍ଟି । ''ଆହୁରି ରହିଗଲା ଯେ ? ବେଶ୍ ଆଉ ଦିନେ ଦେଖାଯିବ । ''

''ଏଁ ? ହଁ । '' କଥାଟା କହିସାରି ଇନ୍ଦିରା ମୁହଁକୁ ଚାହିଁଲା ସତ୍ୟବ୍ରତ । କ'ଣ କହେ ଏ ଝିଅଟା ? ଆଉ ଦିନେ ଦେଖିବ !

ଫେରିଲେ ଦୁଇଜଣ । ଘର ପାଖରେ ହେବାରୁ ଦେଖିଲେ, ଭୀମ ଏବଂ ସନିଆ ମା ଏମାନଙ୍କ ଆଡକୁ ଚାହିଁ ହସି ହସି କ'ଣ କଥାବାର୍ତ୍ତା ହେଉଛନ୍ତି ।

''ଆପଣ ତ ଗାଧୋଇ ନାହାନ୍ତି ଇନ୍ଦିରା ଦେବୀ ? ''

''ନା, ସେ ସୁଯୋଗ ପାଇଲି କଉଠୁ ? '' କଳି କରୁଛି ଇନ୍ଦିରା ।

''ଦେଖନ୍ତୁ ତ କି ଅନ୍ୟାୟ । ମୁଁ ସତରେ ଦୁଃଖିତ ''... ସତ୍ୟବ୍ରତ ବିବ୍ରତ ।

''ଆପଣ ତ ଗାଧୋଇ ନାହାନ୍ତି ?''

''ନା । ''

''ତାହେଲେ ଦୁଃଖ ନ କରି ଚାଲନ୍ତୁ ଗାଧୋଇ ନିଆଯାଉ । ''

''ଇନ୍ଦିରା ପଶିଗଲା ସତ୍ୟବ୍ରତର ଶୋଇବା ଘରକୁ । ''

" ମୁଁ ଅଧଘଣ୍ଟାଏ ଛୁଟି ନଉଛି ? "

"ମୋର ଅନୁମତି ଲୋଡ଼ୁଛନ୍ତି ? " ସତ୍ୟବ୍ରତ ହସି ପଚାରିଲା ।

"ହଁ ମୁଁ ବର୍ତ୍ତମାନ ଆପଣଙ୍କ ପ୍ରଜା । "

"ମଞ୍ଜୁର । " ହସି କହିଲା ସତ୍ୟବ୍ରତ । ଇନ୍ଦିରା କବାଟଟା ଆଉଜେଇ ନେଲା । ତା ପଛେ ପଛେ ।

## ଚାରି

ଖୁଅର ହୋଇ ଗାଧୋଇ ଧୋତି ଉପରେ ଲେସ୍‌ଦିଆ ପଞ୍ଜାବୀ ପିନ୍ଧିଲା ସତ୍ୟବ୍ରତ । ଗୋଡରେ ନାଟରା ପିନ୍ଧି ଭିତର ବାରନ୍ଦାରେ ଆସି ବସିଲା ଏବଂ ଭୀମକୁ କହିଲା, ଇନ୍ଦିରା ବାହାରିଲା ମାତ୍ରେ ପ୍ରାତରାଶ ସେଇଠି ଯେମିତି ଦିଆଯାଏ । ଆକାଶକୁ ଅନେଇଲା, ପରିଷ୍କାର ହୋଇ ଆସୁଛି । ଖରା ବେଶ୍ ଯୋର୍ ହେଉଛି । ଭଲ ହେଲା । ପୋକ ମରିଯିବେ । ତା ଛଡ଼ା ଖରା ଦରକାର, ଗଛ ଶୀଘ୍ର ବଢ଼ିବା ପାଇଁ । ବାରନ୍ଦାର ପଙ୍ଖାଟାକୁ ବଢ଼େଇ ଦେଇ ଶେଷ ଧାପରେ ଦେଲା । ଯା ଗରମ ! ତଉଲିଆରେ ମୁହଁ ପୋଛିଲା ସେ ।

ତା ଶୋଇବାଘରୁ ବାହାରି ଆସିଲା ଇନ୍ଦିରା । ସତ୍ୟବ୍ରତ ଆଖି ଫେରେଇ ପାରିଲାନି ତା ଆଡ଼ୁ । ଗାଧୋଇ, ନୂଆ ବେଶ ସାଜି ଆସିଛି ଇନ୍ଦିରା । କି ଅପୂର୍ବ ଦିଶୁଛି ସେ, ମୁଗ୍ଧ ବିସ୍ମୟରେ ସେ ଚାହିଁଲା ତା ଆଡ଼କୁ । ତା ଦୃଷ୍ଟି ଆଗରେ ଲଜ୍ଜିତ ହେଲା ଇନ୍ଦିରା ।

"କ'ଣ ଦେଖୁଛନ୍ତି ? " ପ୍ରଶ୍ନ ଇନ୍ଦିରାର ।

"ଦେଖୁଛି ଆପଣଙ୍କୁ ଆଉ ଆଶ୍ଚର୍ଯ୍ୟ ହେଉଛି, ଆପଣ କାହିଁକି ଡାକ୍ତରୀ ପଢ଼ିଲେ ।"

"ଆଉ କଣ କରିଥାନ୍ତି । "

"ଇନ୍ଦିରା ଦେବୀ, ଏ ନାଁଟା ଆପଣଙ୍କର କିଏ ଦେଇଥିଲା ଜାଣେନି । କିନ୍ତୁ ନାଁ ସାଙ୍ଗରେ ରୂପର ଏଇ ଅଭିନବ ସମାବେଶ ମୁଁ ପ୍ରଥମ ଦେଖିଲି । ଆପଣ, କେଉଁ ରାଜପୁତ୍ରର ଗଳାରେ ବରଣମାଳା ଦେଇ ତାର ଉଆସକୁ ଉଦ୍‌ଭାସିତ ନ କରି, ସମ୍ବଲପୁରର କେଉଁ ଅଖ୍ୟାତ ପଲ୍ଲିରେ କେଉଁ ଅଜଣା ରୋଗୀର ଗୋଡର ପଚା ଘା' ପରୀକ୍ଷା କରି ତାକୁ ଔଷଧ ଦେଉଛନ୍ତି । ଭାଗ୍ୟର କି ବିଡମ୍ବନା କହନ୍ତୁ ତ ! "

ଇନ୍ଦିରା ବୁଝିଲା, ଏ ପ୍ରଶଂସା ସତ୍ୟବ୍ରତର ଅନ୍ତରର । ତାକୁ ଦେଖି ମୁଗ୍ଧ ହୋଇ ସେ କହି ପକେଇଲା କଥା ଗୁଡା । ତଥାପି ସେ କହିଲା, " ଆପଣ ମୋତେ ଲଜ୍ଜିତ କରୁଛନ୍ତି ମିଷ୍ଟର ଚୌଧୁରୀ । "

" ମିଷ୍ଟର ଚୌଧୁରୀ ବି ଡ଼ାମ୍‌ଡ଼୍ । ଆପଣଙ୍କୁ ଲଜ୍ଜିତ କଲି ବୋଲି ଦୁଃଖିତ । କିନ୍ତୁ..."

''ଆପଣଙ୍କର ସେଇ ରାଜପୁତ୍ର ତ ? ସେ କଣ ଆଉ ଅଛି ? ତା କଥା କେବଳ ଢେଙ୍କେମାର ଗପରେ ଶୁଣିବାକୁ ମିଳେ । ''

''ସତରେ ଇନ୍ଦିରା ଦେବୀ'' ଗୋଟାଏ ବିରାଟ ଦୀର୍ଘନିଶ୍ୱାସ ଛାଡ଼ିଲା ସତ୍ୟବ୍ରତ । ''ସେ ରାଜପୁତ୍ର ନାହିଁ,ସେ ନାହିଁ । ''

ଜଳଖିଆ ନେଇ ପହଞ୍ଚିଲା ଭୀମ । ବ୍ୟବସ୍ଥା ଦେଖି ଇନ୍ଦିରା କୁଣ୍ଠିତ ହେଲା, '' ଏ ଯେ ଅନେକ ଜିନିଷ । ''

''ଯା ଖାଇବେ ଖାନ୍ତୁ । '' ସତ୍ୟବ୍ରତ କହିଲା । କଣ୍ଠସ୍ୱର ତାର ଏକାବେଳକେ ଥଣ୍ଡା । ସେ ଯିମିତି ସବୁ ହାରି ଯାଇଛି ଜୁଆ ଖେଳରେ । ଇନ୍ଦିରା ତାର ଏ ଭାବ ପରିବର୍ତ୍ତନ ଲକ୍ଷ୍ୟ କଲା । ସତରେ ଦୁଃଖୀ ଏଇ ସତ୍ୟବ୍ରତ ଚୌଧୁରୀ । ଆଜି ସକାଳୁ ସେ ସନିଆମା ପାଖରୁ ତା' କାହାଣୀ ଶୁଣିଛି । ତା ସ୍ତ୍ରୀର କଥା, ତା ପୁଅ କଥା, ସବୁ ଶୁଣିଛି । ସହାନୁଭୂତିରେ ପୂରି ଉଠିଲା ତାର ଅନ୍ତର । ଖାଉ ଖାଉ ସେ ପଚାରିଲା, ''ଆପଣ କଣ ବାକି ଜୀବନଟା ଇମିତି କଟେଇଦେବେ ? ''

''ଏଁ , କଣ କହିଲେ ? '' ଗୋଟାଏ ଗଭୀର ଚିନ୍ତାରୁ ଉଠିଲା ସତ୍ୟବ୍ରତ । ତାର ଆଖିର ଦୃଷ୍ଟି ଅର୍ଥହୀନ, ଫାଙ୍କା ।

''ମୁଁ କହୁଥିଲି, ଆପଣ ପୁଣି ଥରେ ବିବାହ କରି ସଂସାରକୁ ସଜେଇ ନେଉ ନାହାନ୍ତି ? ''

ହସିଲା ସତ୍ୟବ୍ରତ, ସର୍ବହରାର ହସ ।

''ମୋ ପରି ଗୋଟାଏ ଚଷା, ଯେ ଜଂଗଲରେ ରହେ, ତାକୁ କିଏ ବାହା ହବ ଇନ୍ଦିରା ଦେବୀ ? ତା'ଛଡ଼ା...''

'' ତା ଛଡ଼ା ... ? ''

''ମୋର ସେ ଅବସର କାହିଁ । ''

''ଆପଣଙ୍କର କଣ କେହି ନାହିଁ ନିଜର ? ''

''ହଁ ମୋର ପୁଅ ଅଛି ସୁବ୍ରତ । ''

''ନା — ତା ଛଡ଼ା ଆଉ କେହି ନାହିଁ, ବଡ଼ ମଣିଷ ଗୁରୁଜନ ? ''

''ହଁ ଅଛନ୍ତି । ମୋର ଶାଶୁ ଓ ଶଶୁର । ଶଳା ବି ଗୋଟିଏ ଅଛି । ବଡ଼ ଚାକିରୀ କରେ । ସେ ବଣ୍ୟ ବିଭାଗର କର୍ମଚାରୀ । ଡେରାଡୁନରେ ଥାଏ । ''

''ସେମାନେ ଆପଣଙ୍କୁ ପୁଣି ବିବାହ କରେଇ ଦଉ ନାହାନ୍ତି । ''

ପୁଣି ହସିଲା ସତ୍ୟବ୍ରତ — ''ମୁଁ କଣ ପିଲା ଯେ ମୋତେ ସେଇ ଆଗକାଳ ଭଳି ଧରି ନେଇ ବାହା କରିଦେବେ । ତା ଛଡ଼ା ମୋର ପୁନର୍ବିବାହରେ ମୋ ପୁଅର କଥା ବିଚାରିବାର ଅଛି । ''

'' ସେ ତ ସାନ ପିଲା । ''

ସେଥିଲାଗି ତ ଅସୁବିଧାଟା ବେଶୀ । ତାର ମତାମତ ଜାଣିବାର ସୁବିଧା ନାହିଁ ।''

ସନିଆ ମା' ଆସିଲା । ଖିଆ ସରିଯାଇଥିଲା । ସେ ବାସନ ଉଠେଇନେଲା । ଇନ୍ଦିରାକୁ କିହଲା, '' ମା ଯଦି ରୋଷ ଘରକୁ ଆସନ୍ତେ । ମାଛଟା କିମିତି କ'ଣ କଲେ...''

ଇନ୍ଦିରା ତତ୍‌କ୍ଷଣାତ୍ ରାଜି ହେଲା, ''ଚାଲ ମୁଁ ଯାଉଛି । ''

''ଆରେ ନା- ନା, ''ସତ୍ୟବ୍ରତ ଆପତ୍ତି କଲା । ''ଆପଣ ଓଳିକର ଅତିଥି । ଏ ସବୁ ଗୋଳମାଳକୁ ଯିବା ଦରକାର ନାହିଁ । ତୁମେ ଗୋଟାଏ କିଛି କର ସନିଆ ମା' । ''

''ତୁମେ ଚାଲ ସନିଆ ମା', ମୁଁ ଯାଉଛି । ''

ଇନ୍ଦିରାର ଉତ୍ତର ଶୁଣି ସନିଆ ମା' ଚାଲିଗଲା ।

''ସତରେ ଆପଣ ଯିବେ ମାଛ ରାନ୍ଧିବାକୁ ? '' ସତ୍ୟବ୍ରତ ପଚାରିଲା ।

''ହଁ । '' ହସିଲା ଇନ୍ଦିରା, '' ଦେଖନ୍ତୁ ମିଷ୍ଟାର ଚୌଧୁରୀ, ଏଇ ଗୋଟାଏ ଜାଗା, ହାଣ୍ଡିଶାଳ— ସେଠି ଆମର ପ୍ରବେଶାଧିକାର କେହି କେବେ କାଢ଼ି ନେଇ ପାରିବେ ନାହିଁ । ପୂଝାରି, ବବ୍ରୁଚି, ଯେତେ ଯେ ରଖୁ, ଏଇ ବିଭାଗଟିରେ ଚିରକାଳ ନାରୀ ଜାତିର ଏକଚାଟିଆ ହାକିମି କରିବାର ଅଧିକାର । ସବୁ ଯୁଗରେ - ସବୁ ଦେଶରେ । ''

''ଆପଣମାନଙ୍କର ଜୟ ହଉ । ଢ଼େର ଦିନ ପରେ କଲ୍ୟାଣୀ ହସ୍ତର ସ୍ପର୍ଶରେ ଖାଦ୍ୟ ତାର ସ୍ୱାଦ ଫେରିପାଇବ, ଏଇ ଆଶାରେ ମୁଁ ଅନେଇ ରହିଲି । '' ହୋ ହୋ କରି ହସିଲା ସତ୍ୟବ୍ରତ । ଇନ୍ଦିରା ହାଣ୍ଡିଶାଳକୁ ଯିବାର ଅବ୍ୟବହିତ ପରେ ସେ ଅଫିସ ଘର ଆଡକୁ ଚାଲିଗଲା ।

ଅଫିସ ଘରେ ଖବରକାଗଜ ପଢୁ ପଢୁ ସତ୍ୟବ୍ରତ ଦେଖିଲା ହୃଷୀକେଶ ଜୀପ୍ ନେଇ ଫେରିଲେ । ତାର ଲେଣ୍ଡରୋଭାରଟା ଏଥରେ ପଛରେ ଆସିଲା । ଘଡ଼ି ଦେଖିଲା ସେ, ସାଢ଼େ ଏଗାରଟା ; ଅଫିସ ଘରୁ ବାହାରି ଆସିଲା ସେ । ହୃଷୀକେଶ ତାକୁ ଦେଖି ଖୁସି ହୋଇ କହିଲେ , ''ଗାଡି ଠିକ୍ ହୋଇଗଲା ମିଷ୍ଟାର ଚୌଧୁରୀ । ''

''ବେଶ୍ ।''

''ଏଥର ବାହାରିବା । ଆହୁରି ଅନେକ ବାଟ, ମେଘକୁ ବିଶ୍ୱାସ ନାହିଁ । ''

ହସିଲା ସତ୍ୟବ୍ରତ, ''ନା, ମେଘକୁ ବିଶ୍ୱାସ କେହି କରେନି । ଚାଲନ୍ତୁ — ଖାଇ ନିଆଯାଉ । ''

ଦୁଇଜଣ ପଶିଲେ ବୈଠକଖାନାରେ । ଇନ୍ଦିରା ଆସିଲା, ସେ ରୋଷେଇ ଘରୁ ଆସୁଛି । ମୁହଁରେ ସଂମ୍ମୋହନୀ ହସ, ପଚାରିଲା ସେ ।

''କ'ଣ ହେଲା, ଗାଡ଼ି ଠିକ୍ କଲ ? ''

''ହଁ'', ସ୍ୱସ୍ତିର ନିଶ୍ୱାସ ପକେଇଲେ ହୃଷୀକେଶ ।

''ତାହେଲେ ଯିବା ? ''

''ହଁ'', ଉଠି ପଡ଼ିଲେ ସେ ।

''ତୁମେ ବସ । ମୁଁ ସନିଆକୁ କହେଁ । ନ ଖାଇକି ତ ଯିବ ନାହିଁ '' ସେ ଫେରିଗଲା ହାଣ୍ଡିଶାଳକୁ ।

ଖାଇବାକୁ ବସି ବରଫ ଭାଙ୍ଗିଲା ସତ୍ୟବ୍ରତ ।

''ବୁଝିଲେ ହୃଷୀକେଶ ବାବୁ ?''

''ଆଜ୍ଞା ।''

''ଥାଜି ଲକ୍ଷ୍ମୀଙ୍କ ପ୍ରସାଦ । ''

''ଏଁ, ଲକ୍ଷ୍ମୀଙ୍କ ପ୍ରସାଦ ! କଉଠୁ ଆସିଲା ଏ ଜଙ୍ଗଲରେ ! ''

''ଲକ୍ଷ୍ମୀ କଣ ଖାଲି ବଡ଼ ବଡ଼ ସହରରେ ଥାନ୍ତି ? ''

'' ନା, ମାନେ, ଆପଣଙ୍କ କଥା ମୁଁ ବୁଝି ପାରିଲିନି । ''

ବାଢୁଥିଲା ଇନ୍ଦିରା । ସେ ଟିପ୍‌ପଣୀ କାଟିଲା; ''ତୁମେ ଗୋଟିଏ ଲୋକର କଥା ବୁଝ । ସେ ନାନୀ । ''

''ଏଁ ଠିକ୍ କହିଛ ଚୁନି । ତୁମ ନାନୀ ତ ? କାଲି ରାତିରେ ପହଞ୍ଚି ପାରିଲିନି ବୋଲି ଭାବୁଥିବ । ଅନୁଗୁଳରୁ ଗୋଟାଏ ଏକ୍‌ସପ୍ରେସ ତାର କରି ଦେଇଛି । ଆଜି ଆମେ ପହଞ୍ଚୁଛୁ । ବୁଝିଲ । ତୁମ ବୋଉ ବି ଭାବୁଥିବେ । ''

''ବୋଉ ଭାବୁ ନ ଭାବୁ । ନାନୀ ଭାବୁଥିବ — କୁଆଡେ ଗଲା ଏ ଲୋକଟା । ''

''ହେଁ ହେଁ ହେଁ — ତୁମେ ତ ସବୁ ଜାଣ । '' ହସି ଉଠି କହିଲେ ହୃଷୀକେଶ ।

ତା' ପରେ ନୀରବରେ ତିନିଜଣ ଖାଇବାକୁ ଲାଗିଲେ । ସତ୍ୟବ୍ରତ ଥରେ ଦି ଥର ମୁହଁଟେକି ଦେଖିଲା । ଇନ୍ଦିରା ତା ଆଡକୁ ନିବିଷ୍ଟ ମନରେ ଚାହିଁଛି । ମଝିରେ ମଝିରେ ଅଳ୍ପ ଟିକିଏ ଖାଉଛି । ଖାଦ୍ୟ ଅପୂର୍ବ ହୋଇଛି । ବିଶେଷ କରି ମାଛର ତରକାରି ଗୁଡା । ମାଛ ଭଜା, ମାଛ ଝୋଳ; ମାଛ ବେସର । ମଞ୍ଜିର ବଡ଼ାକୁ ଆମ୍ବିଳ କରିଛି ଇନ୍ଦିରା ।

ଖାଇ ସାରି ଉଠିଲେ ତିନିଜଣ । ହୃଷୀକେଶ ତରତର ହେଉଥାନ୍ତି । ତାଙ୍କ ମନ ଆଉ ଏଠି ନାହିଁ । ଇନ୍ଦିରା ପଶିଲା ସତ୍ୟବ୍ରତର ଶୋଇବା ଘରକୁ । ତାର ଲୁଗାପଟା ସଜାଡ଼ି ନେଇଛି ସୁଟ୍‌କେଶ୍‌ରେ । ଗୋଟାଏ ଛୋଟ ରୁମାଲ୍ ପଡ଼ିଥିଲା ବିଛଣାରେ । କ'ଣ ଭାବିଲା କେଜାଣି ଇନ୍ଦିରା ସେ'ଟାକୁ ନେଲାନି । ତକିଆ ତଳେ ଗୁଞ୍ଜି ଦେଲା ତା' ପରେ ସେଇ ଘରୁ ଡାକିଲା, ''ମିଷ୍ଟର ଚୌଧୁରୀ ଆସିବେ ଟିକିଏ । ''

ବସିବା ଘରୁ ଉଠିଗଲା ସତ୍ୟବ୍ରତ ଶୋଇବା ଘରକୁ । ବିଛଣାର ଗୋଡ ଆଡକୁ ଠିଆ ହୋଇଛି ଇନ୍ଦିରା । ସୁଟ୍‌କେଶ ରଖା ହୋଇଛି ତା ପାଖରେ । ବିଷର୍ଣ୍ଣ ମୁହଁରେ କହିଲା, ''ଆପଣ ଗଲା ରାତିରୁ ଏ ପର୍ଯ୍ୟନ୍ତ ଆମପାଇଁ ଯାହା କରିଛନ୍ତି, ଆତିଥେୟତାର ଏମିତି ନଜିର ଗପରେ ପଢ଼ିଥିବି, କିନ୍ତୁ ପ୍ରକୃତରେ ଯେ ସମ୍ଭବ,ଆପଣ ମୋର ଭୁଲ୍ ଭାଙ୍ଗିଦେଲେ । ଆପଣଙ୍କର ପରିଚୟ ମୁଁ ପାଇଛି, ଏଇ ଭୀମ ଆଉ ସନିଆମା ପାଖରୁ । ସେମାନଙ୍କର ଦୁଃଖ ଆପଣଙ୍କର ଏ ବନବାସ ଇଚ୍ଛାକୃତ । ଆପଣ ମନ କଲେ... । ''

ବାଁ ହାତରେ ଗୋଟାଏ କବାଟ ଧରି ଠିଆ ହୋଇ ନତ ମସ୍ତକରେ ଶୁଣୁଥିଲା ସତ୍ୟବ୍ରତ ।

''କହନ୍ତୁ । ''

''ଆପଣ ପୁଣି ଥରେ ବିବାହ କରନ୍ତୁ । ପୁଅକୁ ଆଣି ପାଖରେ ରଖନ୍ତୁ । ଏଇୟା ସେମାନଙ୍କର ଆନ୍ତରିକ କାମନା । ''

''ଶୁଣି ସୁଖୀ ହେଲି । ''

''ଏଟା ଉତ୍ତର ହେଲାନି । '' ହସିଲା ଇନ୍ଦିରା ।

''କି ଉତ୍ତର ଦେଲେ ଆପଣ ଖୁସି ହେବେ ? ''

'' ମୋ ଖୁସିରେ କିଛି ଯାଏ ଆସେ ନାହିଁ । ମୁଁ ବାହାରର ଲୋକ । ଗୋଟିଏ ଦିନର ପରିଚୟ — ତା ବି ଏକ ବିଚିତ୍ର ପରିସ୍ଥିତି ଭିତରେ — ମୁଁ କେହି ନୁହେଁ । ସେମାନେ କିନ୍ତୁ ଆପଣଙ୍କର ନିଜର ଲୋକ । ଆପଣଙ୍କୁ ସ୍ନେହ କରନ୍ତି, ଶ୍ରଦ୍ଧା କରନ୍ତି, ମଙ୍ଗଳ କାମନା କରନ୍ତି ।''

''ଆପଣ ମୋର ମଙ୍ଗଳ କାମନା କରନ୍ତି ନାହିଁ ? ''

''କରେଁ, ଅନ୍ତରରୁ କରେଁ, ମୋତେ ବିଶ୍ୱାସ କରନ୍ତୁ ମିଷ୍ଟାର ଚୌଧୁରୀ, ଆପଣଙ୍କର ପ୍ରତି ମୋର ଶ୍ରଦ୍ଧାର ସୀମା ନାହିଁ । ''

''ବହୁତ ଧନ୍ୟବାଦ ଇନ୍ଦିରା ଦେବୀ । ଆପଣଙ୍କୁ ମୁଁ ମନେ ରଖିବି ମୋର ମଙ୍ଗଳାକାଙ୍କ୍ଷୀ ହିସାବରେ । ଆଉ କି ହୁକୁମ କହନ୍ତୁ । ''

''ଅପଣ କଟକ ଗଲେ ଆମ ଘରକୁ ଯିବେ, ଏତିକି ପ୍ରାର୍ଥନା । ''

''ମଞ୍ଜୁର । '' ହସିଲା ସତ୍ୟବ୍ରତ । ହାତ ବଢ଼େଇ ଇନ୍ଦିରାର ଗୋଟିଏ ହାତକୁ ଧରି ତା ଆଡକୁ ଚାହିଁ କହିଲା, '' କଉ ଗୋଟାଏ ସତ୍ୟବ୍ରତ ଚୌଧୁରୀ, ଅନୁଗୁଳର ଜଙ୍ଗଲରେ ଥାଏ, ଚାଷ କରେ । ତା ପାଇଁ ଏ ଦୁନିଆର କାହାର କଣ ଯାଏ ଇନ୍ଦିରା ଦେବୀ । କଟକରେ, କାମଦାମର ଫାଙ୍କରେ ହୁଏତ ଦିନେ ଦିଦିନ ମୁଁ ଟିକିଏ ଅଧେ ମନେ ପଡ଼ିବି — ତାପରେ ଭୁଲି ଯିବେ । ସେଇ ଭୁଲିଯିବାଟାକୁ ମୁଁ ଚାହେଁ ଇନ୍ଦିରା ଦେବୀ । ମୋ ପାଇଁ କାହାରି ନିଜର ବ୍ୟାଘାତ ହେଉ ଏକଥା ମୁଁ ଚାହେଁନି । ମୁଁ କିନ୍ତୁ ଆପଣଙ୍କ ପାଖରେ କୃତଜ୍ଞ । ଗଲା ରାତିଠଉଁ ଆଜି ପର୍ଯ୍ୟନ୍ତ ଆପଣଙ୍କର ସାହଚର୍ଯ୍ୟର ମଧୁର ସ୍ମୃତି ଅନେକ ଦିନ ଯାକେ ମୋର ମନେ ରହିବ । ଚାଲନ୍ତୁ, ହୃଷୀକେଶ ବାବୁ ଗାଡି ଷ୍ଟାର୍ଟ କଲେଣି । ''

ଇନ୍ଦିରାର ସୁଟ୍‌କେଶ୍‌ଟା ଉଠେଇ ନେଇ ଆଗେଇ ଗଲା ସେ । ତାକୁ ଗାଡିରେ ବସେଇ ଦେଇ ଦେଖିଲା ଆଖି ଦି'ଟା ଆର୍ଦ୍ର । ହୃଷୀକେଶ ବାବୁ କ'ଣ କହିଲେ କିଛି ଶୁଣିପାରିଲାନି ସେ । ଖାଲି ତାଙ୍କ ହାତଟା ଧରି ଧନ୍ୟବାଦ ଦେଲା । ଗାଡି ଚାଲିଗଲା ।

# ପାଞ୍ଚ

ଓଡ଼ିଶାରେ ଏବଂ ବିଶେଷ କରି କଟକ ଜିଲ୍ଲାରେ ୧୮୬୫-୬୬ରେ ଯେଉଁ ଦୁର୍ଭିକ୍ଷ ହୋଇଥିଲା ତାରି ଫଳରେ ପ୍ରାୟ ଦଶଲକ୍ଷ ଲୋକ ପ୍ରାଣ ହରେଇଥିଲେ । ସେତେବେଳେ ଓଡ଼ିଶାର ଶାସକ ଥିଲେ ଇଂରେଜ କମିଶନାର ରେଭେନ୍‌ଶା । ଦୁର୍ଭିକ୍ଷ ଯେତେବେଳେ ତାର କରାଳ ଛାୟା ବିସ୍ତାର କରିଛି, ଜଣେ ବଙ୍ଗାଳି କର୍ମଚାରୀଙ୍କୁ ଭାର ଦିଆଗଲା, ସେ ଅନୁସନ୍ଧାନ କରି ରିପୋର୍ଟ ଦିଅନ୍ତୁ, କ'ଣ ଅବସ୍ଥା ! ବଙ୍ଗାଳି କର୍ମଚାରୀ ହାଟରେ ଘାଟରେ ଦେଖିଲେ ଓଡ଼ିଆଣୀ ସବୁ ବିଶାଏ ଓଜନର ଖଡୁ ବଳା ପିନ୍ଧିଛନ୍ତି । କଂସା ଖଡୁ ବଙ୍ଗାଳି ଡେପୁଟିଙ୍କୁ ରୂପା ଭଳି ଦିଶିଲା । ରିପୋର୍ଟ ଗଲା — ଓଡ଼ିଶାରେ ଅର୍ଥାଭାବ ନାହିଁ । ଶସ୍ୟ ଅବଶ୍ୟ ହୋଇନି, କିନ୍ତୁ ଲୋକେ ଖାଇବାକୁ ପାଉଛନ୍ତି । ଟଙ୍କାକୁ ଆଠସେର ଚାଉଳ ମିଳୁଛି । କଲିକତାରେ ସେ ରିପୋର୍ଟ ପାଇ ବଡ଼ଲାଟଙ୍କ ଦପ୍ତର ନିଶ୍ଚିନ୍ତ ହେଲେ । ଲୋକଗୁଡା ମିଛରେ ପାଟି କରୁଛନ୍ତି ।

କିନ୍ତୁ ବର୍ଷେ ପରେ ଯେତେବେଳେ ଦେଖାଗଲା ଅବସ୍ଥା ସାଂଘାତିକ, କମ୍ପାନୀ ସରକାରଙ୍କ ଆସନ ଟଳିଲା । ବିଲାତରୁ ଏକ ବ୍ୟବସାୟ ପ୍ରତିଷ୍ଠାନ ଆସି ମହାନଦୀରେ ଆନିକଟ ବାନ୍ଧି କେନାଲ ଖୋଳି ଲୋକଙ୍କୁ କାମ ଯୋଗେଇଲା । ପାଦ୍ରୀମାନେ ଆସି ଧର୍ମାନ୍ତର ବଦଳରେ ବାଣ୍ଟିଲେ ଚାଉଳ । ଅଭିଜାତ ସମାଜର କଡ଼ାକଡ଼ି କଠିନ ହେଲା । ଫଳରେ ପାଦ୍ରୀ ଆଉ ମୋଲ୍ଲାଙ୍କ କାମ ସହଜ ହେଲା ।

କେନ୍ଦ୍ରାପଡ଼ା କେନାଲ ଖୋଳା ହେଉଥାଏ । ମହାନଦୀର ଉତ୍ତର କୂଳରେ ଜଗନ୍ନାଥ ପଣ୍ଡା ବୋଲି ଜଣେ ଦରିଦ୍ର ବ୍ରାହ୍ମଣ ବାସ କରୁଥିଲା । କେଉଟ ବସ୍ତିରେ ଏକା ବ୍ରାହ୍ମଣ ବାସିନ୍ଦା ସେ । ଗୋଟାଏ ପ୍ରକାଣ୍ଡ ବରଗଛ ମୂଳରେ ମଙ୍ଗଳା ଠାକୁରାଣୀଙ୍କ ସ୍ଥାନ । ଦେହୁରୀ ବ୍ୟତୀତ ଠାକୁରାଣୀଙ୍କ ବ୍ରାହ୍ମଣ ପୂଜକ ହୋଇଥାଏ ଜଗନ୍ନାଥ ପଣ୍ଡା ବା ଜଗାନ୍ନା । ଦୁର୍ଭିକ୍ଷର ଦାଉରେ ସେ ମଧ୍ୟ କ୍ଷତ ବିକ୍ଷତ । ନବୀନା ସ୍ତ୍ରୀକୁ ନେଇ ଗାଁ ମୁଣ୍ଡରେ, ଠାକୁରାଣୀ ଶାଳର ଅଦୂରରେ, ଖଣ୍ଡେ ପଲା ମାରି ବସା ବାନ୍ଧିଥାଏ ସେ । ତାର କୈବର୍ତ୍ତ ଯଜମାନଙ୍କ ମଧ୍ୟରୁ କେହିକେହି ନଈରେ ଡକାଏତି କରୁଥିଲେ । ସେ ଦିନ ଗୁଡାକରେ ମଙ୍ଗଳାଙ୍କର ପୂଜା ଆଡମ୍ବରରେ ହେଉଥିଲା । ବୋଦା ଏବଂ କୁକୁଡା ବଳି ପଡୁଥିଲା । ମୋଟ ଉପରେ ଜଗାନ୍ନାର ଖାଦ୍ୟର ଅଭାବ ଥିଲାନି । ଦୁଇଟି ପ୍ରାଣୀ, କେତେ ବା ଦରକାର ?

ଏଇ ସମୟରେ ଗାଁ ପାଖରେ ତମ୍ବୁ ପଡ଼ିଲା । କମ୍ପାନୀ ସାହାବ ରହିବ । ତମ୍ବୁ ତ ଗୋଟାଏ ନୁହେଁ — ବଡ଼ ପଡ଼ିଆରେ ପଡ଼ିଲା ପନ୍ଦର କୋଡିଏଟା । ବଡ଼ ତମ୍ବୁରେ ରହିଲା

— ସାହାବ, ମେଜର ସେକଲଟନ୍ । ବୟସ ପ୍ରାୟ ପଚାଶ ବର୍ଷ. କିନ୍ତୁ ଭାରି ଶକ୍ତ, ସମର୍ଥ । ଘୋଡାରେ ତ ବୁଲେ, ପାଦରେ ଚାଲି ଚାଲି ସେ ପ୍ରତିଦିନ ଆଠ ଦଶ ମାଇଲ ବୁଲୁଥିଲା ।

ଗାଁ ଲୋକେ ଦୂରରୁ ଦେଖନ୍ତି ଏ ତମ୍ବୁ ସହରକୁ । ରାତିରେ ସେଠି ଗେସ୍ ଆଲୁଅ ଜଳେ । ତମ୍ବୁରେ ନାନା ଅଞ୍ଚଳର ଲୋକ ଥାନ୍ତି ବଙ୍ଗାଳୀ, ମାନ୍ଦ୍ରାଜୀ, ପଞ୍ଜାବୀ, ଓଡ଼ିଆ ବାବୁ ବି ଜଣେ ଦି'ଜଣ । ଦିନେ ଜଗାନ୍ନା ବୁଲିବାକୁ ଆସିଥିଲା ବଡ଼ ପଡ଼ିଆକୁ, ସାହାବ ହାବୁଡରେ ପଡ଼ିଗଲା । ସାହାବ ଦେଖିଲା, ଦୁର୍ଭିକ୍ଷ ପ୍ରପୀଡିତ ଓଡ଼ିଆଙ୍କ ମଧରେ ଜଗାନ୍ନା ବେଶ୍ ସୁସ୍ଥ ସବଳ । ଗୋରା ଚେହେରା । ସାହାବ ଖୁସି ହୋଇ ପଚାରିଲା, ''କ୍ୟା ନାମ୍ ତୁହ୍ମାରା ?''

''ଜଗନ୍ନାଥ ପଣ୍ଡା ।''

'' କାମ କରିବ ମୋ ପାଖରେ । ପାଞ୍ଚ ରୂପିଆ ତନଖା । ''

ରାଜି ହୋଇଗଲା ଜଗାନ୍ନା । ପାଞ୍ଚ ଟଙ୍କା — ଅନେକ ଗୁଡାଏ କଉଡି । ମଙ୍ଗଳା ତ ଅଛନ୍ତି । ସେ ବି ତ ଯାଉନି କୁଆଡେ । ସାହାବ ସାଙ୍ଗରେ ଗଲା ସେ ତମ୍ବୁକୁ । ତାର ଚାକିରି ହେଲା । ବଙ୍ଗାଳୀ ବାବୁ ବୁଝେଇଦେଲା, ସେ ହବ ସାହାବର ଖାସ୍ ଚପରାସି । ସକାଳ ଆଠଟାବେଳକୁ ଆସିବ; ବାରଟା ପର୍ଯ୍ୟନ୍ତ । ତା' ପରେ ଉପରବେଳା ତିନିଟାରୁ ପାଞ୍ଚଟା । ଖୁସି ହୋଇ ଫେରିଗଲା ଜଗାନ୍ନା । ତା ସ୍ତ୍ରୀକୁ କହିଲା ସବୁ କଥା । ଦି' ଆଡ କୌଣସି ମତେ ସମ୍ଭାଳିବାକୁ ହେବ । ମାସକୁ ପାଞ୍ଚଟଙ୍କା, ପାଏ ଜମି ମିଳିବ ଏ ଟଙ୍କାରେ । ସକାଳୁ କାମକୁ ଆସେ ଜଗାନ୍ନା । ସାହାବ ସେଇ ଯେ ବାହାରି ଯାଏ ଆଉ ଦେଖା ମିଳେନି ତାର । ଉପରଓଳି କିନ୍ତୁ ସାହାବ ତମ୍ବୁରେ ବସି କାମ କରେ ଆଉ ମଦ ପିଏ । ସଂଧ୍ୟାବେଳକୁ ଏକାବେଳକେ ମାତାଲ ହୋଇଯାଏ ।

କାମ ଆରମ୍ଭ ହେଲା, ମାଟି ଖୋଳା କାମ । ଜଗାନ୍ନା ଦେଖିଲା ଦି' ମାସ ଏ କାମ । ତା' ପରେ ଦିନେ ବଖତ୍ ଉଣି ସାହାବକୁ କହିଲା, ''ମତେ କିଛି ମିଳୁ ହଜୁର । ମୁଁ ବି ମୂଲିଆ ଲଗେଇ କାମ କରିବି । ''

ସାହାବ ହୁକୁମ ଦେଲା, ''କାଲ୍ ଦଶ୍ ଆଦମି ଲେ ଆଓ । ''

ତହିଁ ଆରଦିନ ଦଶଟା ଟୋକାଙ୍କୁ ନେଇ ଠିଆ କଲା ଜଗାନ୍ନା । ତା ନାଁରେ କାମ ଦିଆଗଲା । ତା ମାରଫତରେ ଦଶଟା କୋଡି ଗଇଁତି ପାଇଲେ ଟୋକାଏ । ମଜୁରି ଦିନକୁ ଦିଅଣା ।

ତିନିମାସ ପରେ ତାର ମୂଲିଆ ହେଲେ ଦୁଇଶହ । ଜଗାନ୍ନାର ମାସକୁ ରୋଜଗାର ଶହେ କୋଡିଏ ଟଙ୍କା । ଦରମା ପାଞ୍ଚ ଟଙ୍କାତ ଅଛି । ଚାକିରି ଛାଡ଼ି ନ ଥାଏ କିମ୍ବା ମଙ୍ଗଳାଙ୍କୁ ବି ଛାଡ଼ି ନ ଥାଏ ।

ସେଦିନ ସଂଜବେଳେ ସାହାବ ଡାକିଲା, ‘‘ଜଗର ନାଠ ? ’’

‘‘ହଜୁର । ’’

ତମ୍ବୁ ଭିତରକୁ ପଶି ଆସି ଦେଖିଲା ଜଗାନ୍ନା, ସାହେବ ଉଲଗ୍ନ ହୋଇ ଖଟରେ ବସିଛି । ପାଖରେ ମଦ ବୋତଲ ଓ ଗିଲାସ । ହୁକୁମ ହେଲା, ‘‘ଏକ ଛୋକରୀ ଲେ ଆଓ ।’’

କେଉଁଠୁ ପାଇବ ଜଗାନ୍ନା ଛୋକ୍ରୀ ।

‘‘ଆରେ, ତୁହ୍ମାରା ଅଉରତକୁ ଲେ ଆଓ ’’ ସାହେବ ପାଟି କରି ଉଠିଲା ।

ଚମକି ପଡ଼ିଲା ଜଗାନ୍ନା । ତା ସ୍ତ୍ରୀ ଅନ୍ତସତ୍ତ୍ୱା । କ’ଣ ଭାବି କହିଲା, ‘‘ ଲେ ଆତା ସାହେବ । ’’

‘‘ଜଲ୍‌ଦି ସେ ଆଓ । ’’

ତମ୍ବୁରୁ ବାହାରି ଆସିଲା ଜଗାନ୍ନା । କଣ କରିବ, ତାକୁ ବୁଦ୍ଧି ଦିଶିଲା ନାହିଁ । ଚାଲିଲା ଗାଁ ଆଡେ । ପଦନା ମାଇପ ଯାଉଛି ନା ? ନଜର କଲା ସେ । ହଁ ତ ! ‘‘ କିଲୋ ବେଙ୍ଗ, କୁଆଡେ ଯାଇଥିଲୁ ? ’’

‘‘ ଆଉ କୁହନି ନନା । ଓରିଏ ଖଟି ଏଇ ଖୁଦ ମୁଠାକ ଆଣିଛି । ଚାଉର କ’ଣ ମିଳୁଛି ? ’’ ପଦନା ଏଇ ବେଙ୍ଗକୁ ଛାଡ଼ି ଦେଇ ପଳେଇଲା କୁଆଡେ ଦୁର୍ଭିକ୍ଷ ଦାଉରେ । ବେଙ୍ଗ ଜୁଆନ ଟୋକି । ବର୍ଷ ବାଇଶ, ଚବିଶ ହେବ । ମନ ଠିକ୍ କଲା ଜଗାନ୍ନା । କହିଲା ‘‘ବେଙ୍ଗ , ମୋ କଥା ଯଦି ରଖିବୁ, ତୋ ଦୁଃଖ କଷ୍ଟ ସବୁ ଯିବ । ସୁଖରେ ରହିବୁ ତୁ । ’’

‘‘କ’ଣ କରିବି କୁହ ? ’’ ବେଙ୍ଗର ସହାସ୍ୟ ଉତ୍ତର । ଅଣ୍ଟିରୁ ଟଙ୍କାଟିଏ କାଢ଼ିଲା ଜଗାନ୍ନା । କହିଲା, ‘‘ନେ, ମୋ ସାଙ୍ଗରେ ଆ । ’’

ତମ୍ବୁକୁ ଫେରିଲା ଜଗାନ୍ନା । ଅନ୍ଧାର ହୋଇଗଲାଣି ସେତେବେଳକୁ । ବେଙ୍ଗ ଚାଲିଛି ତା ପଛେ ପଛେ । ଟଙ୍କାଟି ସେ ତା ଖୋସଣିରେ ଗଣ୍ଠି ମାରିଛି । ସାହାବ ତମ୍ବୁ ଭିତରକୁ ପଶିଗଲା ଜଗାନ୍ନା । ଶୋଇଛି ସାହାବ । ସଂପୂର୍ଣ୍ଣ ଉଲଗ୍ନ । ଏକୁ ଦେଖି ପଚାରିଲା, ‘‘ଲାୟା ?’’

‘‘ହଜୁର । ’’

‘‘କାହାଁ ?’’

ଜଗାନ୍ନା ବାହାରି ଆସି ବେଙ୍ଗକୁ ସାଙ୍ଗରେ ନେଇ ଭିତରକୁ ପଶିଲା । ବେଙ୍ଗକୁ ଦେଖି ଖୁସି ହୋଇଗଲା ସାହାବ । ଉଠି ଆସି ଟେକିନେଲା ବିଛଣାକୁ । ବେଙ୍ଗ କାନ୍ଦି ଉଠିଲା — ‘‘ଜଗାନ୍ନା । ’’

‘‘ଚୁପ୍ । ଜୁଆନ ଟୋକିଟା । ମରଦଟାକୁ ସମ୍ଭାଳି ପାରିବୁନି’’ ପଳେଇ ଆସିଲା ଜଗାନ୍ନା ତମ୍ବୁ ଭିତରୁ ।

ସେଦିନ ରାତିରେ ଶୋଇ ପାରିଲାନି ଜଗାନ୍ନା । ତା ସ୍ତ୍ରୀ ବୁଝି ପାରିଲାନି ଘଟଣା କ’ଣ ? ପଚାରିଲା । ଜଗାନ୍ନା କିଛି କହିଲା ନାହିଁ । ବାଆଁରେଇ ଦେଲା ।

ରାତି ସରିବା ଆଗରୁ କିନ୍ତୁ ଜଗାନ୍ନା ଆସି ତମ୍ବୁ ଦୁଆରେ ହାଜର । ବେଙ୍ଗ ସାହେବ ପାଖରେ ଶୋଇଥିଲା । ତାକୁ ଡାକିଲା । ଉଠି ଆସିଲା ସେ । କହିଲା, '' ବଡ଼ ମୂର୍ଖ ସାହେବଟା । '' ତା ଗାଲ କାମୁଡ଼ି ପକେଇଛି । ସ୍ତନ ଦିଟାକୁ ଅକ୍ଷତ ରଖିନି । କିନ୍ତୁ ଦଶ ଟଙ୍କା ଦେଇଛି । କହିଛି, ଆଉ ଆସିଲେ ଆହୁରି ଟଙ୍କା ଦବ ।

ଜଗାନ୍ନା ଛାତିରୁ ବୋଝ ଓହ୍ଲେଇ ଗଲା । ସେ ବେଙ୍ଗକୁ ଧରି ଗାଁକୁ ଫେରିଲା । ତା ସ୍ତ୍ରୀ ଦେଖିଲା ସ୍ୱାମୀର ଦୁଶ୍ଚିନ୍ତା ନାହିଁ ।

ତା'ପରେ ସବୁ ସହଜ ହୋଇଗଲା । ପଞ୍ଜାବୀ ଓଭ୍ରେସର ବଳବନ୍ତ ପୁରିକୁ ହାତ କଲା ଜଗାନ୍ନା । ଭାଗ ଅଧା ଅଧା । ଚାରିଶ ଲୋକଙ୍କ ଜାଗାରେ ଆଠଶ ଲୋକଙ୍କ ମଜୁରୀ ବିଲ୍ କଲା ଜଗାନ୍ନା । ତା ବିଲ୍ ଗୁଡା ସେ ବରାବର ଓପରଓଳି ସାହାବ ପାଖରୁ ପାଶ୍ କରେଇ ନିଏ, ବେଙ୍ଗ ତ ଅଛି, ଭାବନା କଣ ?

ତିନିବର୍ଷ ପରେ କମ୍ପାନୀ ଯେତେବେଳେ କେନାଲ ଖୋଳା ସାରି ବିଲାତକୁ ଫେରିଲା, ମେଜର ସେକଲଟନର ଦୟାରୁ ଜଗାନ୍ନା, ଜମି କିଣିଛି, ସେଇ କେନାଲ କୂଳେ କୂଳେ ପଚାଶ ଏକର । ତମ୍ବୁ ପଡ଼ିଆକୁ କିଣି ସେଠି ଘର ବନେଇଛି ଦୁଇପୁର । ପୁଅ ହୋଇଛି ଗୋଟିଏ । ମଙ୍ଗଳା ଠାକୁରାଣୀଙ୍କ ମନ୍ଦିର କରିଦେଇଛି ଜଗାନ୍ନା ନିଜ ପଇସାରେ ।

ବେଙ୍ଗ ସେତେବେଳକୁ ଦୁଇଟି ଧଳା ଧଳା ଶିଶୁକୁ ନେଇ ବସା ବାନ୍ଧିଛି କଟକର ଏକ କୋଠାରେ । ସାହାବ ସେ କୋଠା କିଣି ଦେଇଛି ତାକୁ । ଜମି କିଣି ଦେଇଛି, ଟଙ୍କା ଦେଇଛି ଖୋରାକ ପୋଷାକ ବାବଦକୁ ।

ବାସୁଦେବ ପାଠ ପଢ଼ି ମାଇନର ପାଶ କଲେ । ତା' ପରେ ବାପ ପାଖରେ ଠିକାଦାରି ଶିଖିଲେ । ବିଲ୍ ଭଙ୍ଗେଇବାକୁ କଟକ ଆସିଥାନ୍ତି, ମାର୍ଚ୍ଚ ମାସରେ ବିଲ୍ ଭଙ୍ଗାଇଥାନ୍ତି, ପାଞ୍ଚହଜାର ଟଙ୍କା । ଗୋଟିଏ ଜମିଦାରି ଲାଟ୍‌ରେ ଉଠିଥାଏ । ନିଲାମ ଡାକରେ ଚାରି ହଜାର ପାଞ୍ଚଶ ଟଙ୍କାରେ କିଣି ପକେଇଲେ ବାସୁଦେବ ପଣ୍ଡା । ଜଗାନ୍ନା ଶୁଣି ତାରିଫ କଲା ପୁଅର ବିଷୟ ବୁଦ୍ଧିକୁ । ବାସୁଦେବକୁ ବାହା କଲା ଜଗାନ୍ନା, ପାଖ ଜମିଦାର କେଶବ ଚଇନି ଘରେ, ସୁନ୍ଦରୀ ବୋହୂଟିଏ କରି । ତାର କେତେମାସ ପରେ, ହଠାତ୍ ତିନିଦିନ ଜର ଭୋଗି ମରିଗଲା ଜଗାନ୍ନା ।

ବାସୁଦେବ ଆହୁରୀ ଜମିଦାରୀ କିଣିଲେ ଏବଂ ଠିକାଦାରୀ ଛାଡ଼ିଲେ । କଟକରେ ଘର କଲେ, ଜମି କିଣିଲେ ଏବଂ ରକ୍ଷିତା ମଧ୍ୟ ରଖିଲେ । ରାଜପୁରୁଷଙ୍କୁ ଦଶହରା ଦିଆଲିରେ ନିମନ୍ତ୍ରଣ କରି ପ୍ରଚୁର ହ୍ୱିସ୍‌କି ପିଆଇଲେ, ବାଇ ନାଚ କଲେ ଏବଂ ମରିବା ପୂର୍ବରୁ ନିଜ ନାମ ଲେଖିଲେ ରାୟ ବାହାଦୂର ବାସୁଦେବ ଚୌଧୁରୀ ।

ବାସୁଦେବ ଚୌଧୁରୀଙ୍କ ପୁଅ ରାଜକିଶୋର ଚୌଧୁରୀ ବି.ଏ ପାଶ୍ କଲେ ଏବଂ ଓସ୍ତାଦ୍ ରଖି ଗୀତ ବାଦ୍ୟ ଶିଖିଲେ । ତାଙ୍କ ବୈଠକ ଖାନାରେ ଟପ୍‌ପା, ଠୁମରି ବନ୍ଦିଶରେ

ଚକିଲା, ଧ୍ରୁପଦ, ଖେୟାଲ । କିନ୍ତୁ ତାଙ୍କ ପୁଅ ସତ୍ୟବ୍ରତ ଯେତେବେଳେ ଏଲ୍ଲାବାଦରେ ଏମ୍.ଏ ପରୀକ୍ଷା ଦେଉଥାଏ, ଜମିଦାରୀଟି ଚାଲିଗଲା ତାଙ୍କର । ଘରକୁ ଫେରି ଆସିଲା ସତ୍ୟବ୍ରତ ପରୀକ୍ଷା ଦେଇସାରି । ଶୁଣିଲା ସବୁ କଥା । ତାର ଅଳ୍ପଦିନ ଆଗରୁ ଜନ୍ମିଥାଏ ସୁବ୍ରତ । ବିପଦ ଏକା ଆସେନି । ହଠାତ୍ ଜରରେ ପଡ଼ିଲା ତା ସ୍ତ୍ରୀ ହେମମାଳୀ ।

ସେତେବେଳେ ବର୍ଷାଦିନ । କଟକରୁ ଡାକ୍ତର ପହଞ୍ଚିଲେ ଚବିଶ ଘଣ୍ଟା ପରେ । — କହିଲେ ଅସାଧ ରୋଗ । କଟକ ଅଣାଗଲା ହେମମାଳୀକୁ । ବାଲେଶ୍ୱରରୁ ତାର ପିତାମାତା ଆସିଲେ । ଆଠଦିନ ଅଚେତନ ରହି ମରିଗଲା ହେମମାଳୀ । ଶିଶୁ ସନ୍ତାନଟିକୁ ମାତାମହୀ ନେଇଗଲେ ।

ତାପରେ ରାଜକିଶୋର ଆଉ ବେଶୀ ଦିନ ବଞ୍ଚି ନ ଥିଲେ । ସତ୍ୟବ୍ରତ ଦେଖିଲା ପିତା ଯକ୍ଷ୍ମାରେ ଆକ୍ରାନ୍ତ । ତିନିମାସ ପରେ ସେ ସେହି ଡିହସାହିର ଶ୍ମଶାନରୁ ଯେତେବେଳେ ପିତାଙ୍କୁ ଦାହ କରି ଫେରିଲା — ଘରେ ତା ପାଇଁ ଅପେକ୍ଷା କରିବାକୁ କେହି ନ ଥିଲେ । ପିତୃକ୍ରିୟା ସାରି ପଳେଇଆସିଲା ସତ୍ୟବ୍ରତ କଟକ । ରହି ପାରିଲାନି ସେଠି । ପଳେଇଗଲା ଏଲ୍ଲାବାଦ । ସେଠି ବି ଅସ୍ଥିର ହେଲା । ତା ପରେ ପଳେଇଲା ଜାପାନ । ଗୋଟାଏ ଫାର୍ମରେ କୃଷି ବିଦ୍ୟା ଶିଖିଲା । ସେଠୁ ଗଲା ଫିଲିପାଇନ, କ୍ୟୁବା । ତିନି ବର୍ଷ ପରେ ଫେରିଲା ସେ । ପୁଅକୁ ଦେଖିବାକୁ ଗଲା । ଶାଶୁ ଶଶୁର ସନିର୍ବନ୍ଧ ଅନୁରୋଧ କଲେ ଦ୍ୱିତୀୟ ଦାର ଗ୍ରହଣ କରିବାକୁ । ତାଙ୍କର ଗୋଟିଏ ଝିଆରୀ କଥା କହିଲେ । ଦରକାର କ'ଣ ? ସୁବ୍ରତ ତ ଅଛି । ଚୌଧୁରୀ ବଂଶର ଆଲୋକ ଶିଖା । ଆଉ ବଂଶ ବୃଦ୍ଧିର ଦରକାର କ'ଣ ? ପଳେଇ ଆସିଲା କଟକ । ତାର ଜଣେ ବଂଧୁ ଥିଲା ଜଙ୍ଗଲ ବିଭାଗର ଉଚ୍ଚ କର୍ମଚାରୀ । ତା ଶଙ୍କାର ସାଙ୍ଗ । ତାକୁ କହିଲା ତାର କଳ୍ପନା । ଫାର୍ମ କରିବ ସେ । ଶହେ ଏକର ଜମି ଦରକାର । ସେଇ ବନ୍ଧୁ ବତେଇଦେଲା ଅନୁଗୁଳ ପାଖ ଜାଗାଟା । ସରକାରୀ ଜମି ଲିଜ୍ ନେଲା ଶହେ ଏକର । ଫାର୍ମ କଲା ସେଠି — ନାମ ଦେଲା "ସୁବ୍ରତ ଉଦ୍ୟାନ ।" ଗାଁକୁ ଯାଉ ଜମିକୁ ଆସ୍ତେ ଆସ୍ତେ ବିକିଲା । ଜମିଦାରୀ କମ୍ପେନସେସନ ପାଇଲା । ସେଇ ଟଙ୍କାକୁ କିଛି ଖର୍ଚ୍ଚ କଲା ଫାର୍ମରେ । ଘର କଲା । ଟ୍ରାକ୍ଟର କିଣିଲା, ଗାଡି କିଣିଲା, ଡେଆରି କଲା, ପୋଲଟ୍ରି କଲା, ସବୁ କଲା ।

ଭୀମକୁ ଦେଇଥିଲା ସେଇ ଜଙ୍ଗଲ ବିଭାଗର ବଂଧୁଟି । ଭୀମ ତାଙ୍କରି ଘରେ ଥିଲା ଏବଂ ସତ୍ୟବ୍ରତକୁ ଚିହ୍ନିଥିଲା ଅନେକ ଦିନୁ । ଏଇ ଅଞ୍ଚଳର ଲୋକ ସେ, ତାକୁ ପାଇଲାରୁ କାମ ସହଜ ହେଲା । ସସ୍ତ୍ରୀକ ଭୀମ ହେଲା ତା ଘରର ମେନେଜର । ଭୀମର ପୁଅ ସନିଆ ହେଲା ତାର ବାଟଲାର ଆଉ ଡ୍ରାଇଭର । ଗୋଟିଏ ଦୂର ସମ୍ପର୍କୀୟ ପିଲାକୁ ଆଣି ରଖିଲା ସହକାରୀ କରି । ତାକୁ ରହିବାକୁ ଘର କରିଦେଲା । ତା' ପରେ ଯୋଟିଲେ ମିସ୍ତ୍ରୀ, ପୋଲଟ୍ରି ବାଲା, ଡେଆରୀ ବାଲା, କାମଦାର, ମାଳୀ ଓ ଆହୁରି ସମସ୍ତେ ତାର ଫାର୍ମର ବାସିନ୍ଦା । ସମସ୍ତଙ୍କୁ ଘର, ପାଣି, ବିଜୁଳି ଆଲୁଅ ଯୋଗେଇ ଦେଲା ।

ସଉକ ରହିଲା ତାର ଦୁଇଟି, ଚିତ୍ରାଙ୍କନ ଓ ସଙ୍ଗୀତ । ପ୍ରଥମଟା ଶିଖିଥିଲା ସେ ଜାପାନରେ । ତାର ଗୁରୁ ଥିଲେ ଜାପାନର ତତ୍କାଳୀନ ପ୍ରଧାନ ଲେଣ୍ଡସକେପ ପେଣ୍ଟାର ଆକୁଟାଓୟା, ଅଦ୍‌ଭୁତ ହାତ ତାଙ୍କର । ତୁଳିର ଗୋଟିଏ ଗାରରେ ସେ ଅପୂର୍ବ ଭାବ ଫୁଟେଇ ପାରୁଥିଲେ । ତାଙ୍କ ଛବିରେ ରେଖା ଖୁବ୍ କମ୍ — ଆବେଶଧର୍ମୀ ଛବି । ଛୋଟ ଷ୍ଟୁଡ଼ିଓଟିଏ ବନେଇଲା — ସେ ସୁବ୍ରତ ଉଦ୍ୟାନରେ । ନିଜେ ଷ୍ଟୁଡିଓକୁ ସଜେଇଲା ।

ଗୀତ ଶୁଣିବାକୁ ସେ ବର୍ଷରେ ଥରେ ଦି'ଥର ପଳାଏ କଲିକତା, ଲଖନଉ, ଦିଲ୍ଲୀ, ଆଗ୍ରା । ଦଶ ପନ୍ଦର ଦିନ ରହେ, ଗୀତ ଶୁଣେ, ଫୁର୍ତ୍ତି କରେ । ତା ପରେ ଫେରିଆସେ ଫାର୍ମକୁ । ପୁଣି କାମକରେ ପୂରା ଉଦ୍ୟମରେ ।

## ଛଅ

ଇନ୍ଦିରା ଓ ହୃଷୀକେଶଙ୍କୁ ବିଦାୟ ଦେଇ ଫେରିଲା ସତ୍ୟବ୍ରତ ନିଜ ଶୋଇବା ଘରକୁ । ମନରେ ତାର ଗୋଟିଏ କରୁଣ ରାଗିଣୀ ହେରଫେର ହେଉଥାଏ । ଏଇ ଝିଅଟା, ଇନ୍ଦିରା କେତେଘଣ୍ଟା ବା ଥିଲା । ଗଲାବେଳେ ତା' ମନରେ ଆଣି ଦେଇଗଲା ଏକ ମଧୁର ଆଲୋଡନ । ଇନ୍ଦିରା । ନାମଟି ବେଶ୍ । ତା ମୁହଁଟି ଭାସି ଆସିଲା ସତ୍ୟବ୍ରତର ଆଖି ଆଗରେ — ଭାରି ସୁନ୍ଦର ମୁହଁଟି । ବଡ଼ ବଡ଼ ଆଖି ଯୋଡିକ ବୁଦ୍ଧିଦୀପ୍ତ । ଜତୁ ଦେହରେ ତାର ଆଶ୍ଚର୍ଯ୍ୟ ଚଞ୍ଚଳତା । କେତେ ସ୍ମାର୍ଟ ଝିଅ । ବିଛଣାରେ ବସି ପଡ଼ିଲା ସତ୍ୟବ୍ରତ । ତକିଆଟାକୁ ଟାଣି ଆଣିଲା । ଗୋଟାଏ ମଧୁର ବାସ୍ନା । ନାକ ପାଖକୁ ଟେକିନେଲା ସତ୍ୟବ୍ରତ । କାଲି ରାତିରେ ଏଇ ତକିଆରେ ମୁଣ୍ଡ ଦେଇ ଶୋଇଥିଲା ଇନ୍ଦିରା । ତାର କେଶ ତୈଳର ବାସ୍ନା । କି ତେଲ ସେ ଲଗାଏ ମୁଣ୍ଡରେ ? ନଜର ପଡ଼ିଲା — ଛୋଟ ରୁମାଲଟିଏ । ଉଠେଇ ଆଣି ଦେଖିଲା । ଗୋଟାଏ କୋଣରେ ସାଗୁଆ ସୂତାରେ ବୁଣା ହୋଇଛି — 'ଇନ୍ଦିରା' । ସେଥିରେ ପୁଷ୍ପସାରର ମଦିର ବାସ୍ନା । ଛାଡ଼ି ଦେଇଗଲା ଝିଅଟି ଏଇ ରୁମାଲଟା । ତାକୁ ଚାରିଚଉତ କରି ଭାଙ୍ଗି ଖଣ୍ଡେ କାଗଜରେ ମୋଡି ଆଲମାରିରେ ରଖିଦେଲା । ତା ପରେ ସେଇ ତକିଆଟାକୁ ମୁଣ୍ଡତଳେ ଦେଇ ଶୋଇ ପଡିଲା ସତ୍ୟବ୍ରତ ।

ଦୁଇଦିନ ପରେ ଚିଠି ଆସିଲା । ଖଣ୍ଡିଏ ପୋଷ୍ଟକାର୍ଡ, ହୃଷୀକେଶ ବାବୁ ଲେଖିଛନ୍ତି ଅନେକ ଅନେକ ଧନ୍ୟବାଦ ଦେଇ । ଆଉ ଚିଠିଟା ଲଫାପା, ନାରୀ ହାତର ଅକ୍ଷର । — ''ମିଷ୍ଟାର ସତ୍ୟବ୍ରତ ଚୌଧୁରୀ, ସୁବ୍ରତ ଉଦ୍ୟାନ, ଅନୁଗୁଳ । ଚିଠିଟା ଖୋଲିଲା ସତ୍ୟବ୍ରତ, ନାକରେ ବାଜିଲା ସେଇ ରୁମାଲର ବାସ୍ନା । ଖଣ୍ଡେ ପତଳା କାଗଜ, ଉପରେ ଛାପା ହୋଇଛି, ଇଂରେଜୀରେ — ଇନ୍ଦିରା ମହାପାତ୍ର, ଏମ୍.ବି.ବି.ଏସ । ପରିଷ୍କାର ଗୋଟି ଗୋଟି ଅକ୍ଷରରେ

ଲେଖା, ''ମିଷ୍ଟାର ଚୌଧୁରୀ, ପ୍ରତ୍ୟେକ ମଣିଷ ଜୀବନରେ ଇମିତି ଗୋଟାଏ ଗୋଟାଏ ଘଟଣା ଘଟେ, ଯାହା ସାରା ଜୀବନରେ ଭୁଲି ହୁଏନି । ଆପଣଙ୍କ ସୁବ୍ରତ ଉଦ୍ୟାନରେ ସେଇ କେତେ ଘଣ୍ଟାର ଅନୁଭୂତି ସିମିତି ଗୋଟାଏ ଘଟଣା । ମନ ଉପରେ ତାର ପ୍ରଭାବ ଅପ୍ରତିହତ ହୋଇ ରହିଛି । ଆପଣଙ୍କୁ ଧନ୍ୟବାଦ ଦେଇ ଛୋଟ କରିବି ନାହିଁ । ସେଇ କେତେ ଘଣ୍ଟାରେ ଆପଣଙ୍କର ଯେଉଁ ପରିଚୟ ପାଇଛି, ତାକୁ ମୋର ମନର କନକ ମଞ୍ଜୁଷାରେ ସାଇତି ରଖିଲି । ଆପଣ କଟକ ଆସିବେ ବୋଲି କହିଥିଲେ । ମୁଁ ତ ଏଇଖିଣି ତିନିମାସ କଟକରେ ରହିବି । ଆପଣ ଏଠିକି ବୁଲି ଆସିଲେ ଆମ ଘରେ ଯଦି ପଦଧୂଳି ଦିଅନ୍ତି, ତା' ହେଲେ କୃତାର୍ଥ ହେବି । ମୋର ମନ ବରାବର କହୁଛି — ଆପଣ ଆସିବେ । ଆପଣଙ୍କର ଜୟ ହଉ । ଇତି। ଇନ୍ଦିରା ।''

ବାଃ, ବେଶ୍ ଚିଠି ଲେଖିପାରେ ତ ଇନ୍ଦିରା । ଅକ୍ଷରଗୁଡ଼ା କି ସୁନ୍ଦର ! ଦୁଇ ତିନି ଥର ପଢ଼ିଲା ସତ୍ୟବ୍ରତ । ତା' ପରେ ଚିଠିଟାକୁ ସେଇ ଲଫାପାରେ ପୂରେଇ ଛାତି ପକେଟରେ ରଖିଦେଲା ।

ସନିଆ ଆସି ଠିଆ ହେଲା । ''ଆଜ୍ଞା, ଗାଡିର ବେରିଂ ଗୁଡା ବଦଳେଇବା ଦରକାର । ଶବ୍ଦ ହେଉଛି । ଏକ୍‌ଜଷ୍ଟ ପାଇପ୍‌ଟା ଫାଟି ଯାଇଛି ।''

''ହୁଁ।''

''ଗଦି ଗୁଡା ପୁରୁଣା ହୋଇଗଲାଣି । ନୂଆ ଗଦି କିଣିବେ କହୁଥିଲେ ?''

''ଆଚ୍ଛା, ତୁ ଯା । ଦେଖିବା କ'ଣ କରାଯିବ ।''

''ଅନୁଗୁଳରେ ହେବ ନାଇଁ । କଟକେ ନବାକୁ ହବ ।''

''ହଉ ।''

ଗୋଟାଏ ଗାଡି ପଶି ଆସିଲା ସୁବ୍ରତ ଉଦ୍ୟାନକୁ । ଓହ୍ଲେଇଲା ସେଇ ବନ୍ୟବିଭାଗର ବଂଧୁଟି । ସତ୍ୟବ୍ରତ ଅଫିସରୁ ଉଠି ବାହାରକୁ ଆସିଲା ।

''ହେଲୋ, ଓଲ୍ଡ଼ ବୟ ।''

ଆଗେଇ ଆସିଲା ଅବନୀବାନ୍ଧବ, ''ମୁଁ ଯାଉଛି ସମ୍ବଲପୁର । ଫେରିବି ସଂଧ୍ୟା ବେଳକୁ । ତୋର ଏଠି ଡିନାର । ବୁଝିଲୁ ?''

''ବୁଝିଲି ।'' ହସି ଉତ୍ତର ଦେଲା ସତ୍ୟବ୍ରତ ।

''କିଛି ବରଫ ରଖିଥିବୁ । We will have a happy time together."

''ବେଶ୍ ।''

''ତା'ହେଲେ ମୁଁ ଚାଲେ ।''

''ଚା' ଟିକିଏ ଖାଇବୁ ନାହିଁ ?''

ଫେରିଲା ଅବନୀ ''କୁଇକ୍'' । ଘଡ଼ିଦେଖିଲା ସେ । ''ମୋର ଲଞ୍ଚ୍ ଆଗରୁ ପହଞ୍ଚିବା ଦରକାର । ଭାରତ ସରକାରଙ୍କର ଜଣେ ମନ୍ତ୍ରୀ ଆସୁଛନ୍ତି । ଗୋଟାଏ ନିଉଜ୍ ପ୍ରିଣ୍ଟ୍ ମିଲ୍

କରିବାର କଥା ହଉଛି । କ'ଣ ର' ମେଟେରିଆଲ୍ ମିଳିବ, କାରଖାନାଟା କଉଠି ବସିବ, ଏଇ ଆଲୋଚନା ହବ । ଆମ ମନ୍ତ୍ରୀ ତ କାଲିଠୁଁ ରାଉରକେଲା ଯାଇଛନ୍ତି । ସେଠି ଓହ୍ଲେଇବେ ଦିଲ୍ଲୀର ମନ୍ତ୍ରୀ । ତା' ପରେ ସମ୍ବଲପୁର ସାର୍କିଟ ହାଉସରେ ଲାଞ୍ଚ୍ ଓ ପରେ ପରେ ଆଲୋଚନା ।'' । ଚା' ଆସିଗଲା । ସେଇଠି ଠିଆ ଠିଆ ଖାଇଦେଲେ ଦୁଇ ବଂଧୁ ଚା' । ଅବନୀ ତା ଗାଡ଼ିକୁ ଫେରିଗଲା ଓ ଅବ୍ୟବହିତ ପରେ ଗାଡ଼ି ନେଇ ସମ୍ବଲପୁର ଚାଲିଗଲା ।

ସଂଧ୍ୟା ବେଳକୁ ଫେରିଲା ଅବନୀ । ଗାଡ଼ିରୁ ବାହାର କଲା ଗୋଟାଏ ଛୋଟ ସୁଟ୍‌କେଶ୍ । ସେଥିରୁ ବାହାରିଲା ଏକ ନାମଜାଦା ସୁରାର ବୋତଲ । ସନିଆ ସଜେଇ ଦେଇଥାଏ ବାହାର ବାରନ୍ଦାରେ ଟେବୁଲ, ଚେୟାର, ବରଫ, ସୋଡ଼ା ଓ କିଛି ଖାଦ୍ୟ । ଦୁଇଟା ଗ୍ଲାସରେ ଢ଼ାଳିଲା ଅବନୀ ପାନୀୟ । ଅପୂର୍ବ ଏ ସ୍କଚ୍ ହୁଇସ୍କି — ସ୍କଟ୍‌ଲେଣ୍ଡର ଦ୍ରାକ୍ଷାରସରେ ତିଆରି ଏ ପାନୀୟ, ପୃଥିବୀର ଏକ ଶ୍ରେଷ୍ଠ ସୁରା । ସତ୍ୟବ୍ରତର ଗିଲାସରେ ଦେଲା ସୋଡା, ନିଜେ ନେଲା ପାଣି । ଦୁଇଟା କରି ବରଫ କ୍ୟୁବ୍ ପକେଇ ଗିଲାସ ଉଠେଇଲା ଅବନୀ, "Let us drink to the health of the Union Minister ଲୋକଟା ଭାରି ଭଲ । ନିଉଜ୍ ପ୍ରିଣ୍ଟ୍ ମିଲ୍‌ଟା ଆମର ଏଠି ହବରେ ଚୌଧୁରୀ । I have done something and I am happy that the Minsiter accepted my suggestions. ପାଞ୍ଚକୋଟି ଟଙ୍କାର ପ୍ରୋଜେକ୍ଟ । ମୋତେ କହୁଥିଲେ ସେ କାରଖାନା ଚଳେଇବାକୁ, ବୁଝିଲୁ ? ମୁଁ ମନା କଲି । ଭାବୁଥିଲି ତୋ ନାଁଟା ସାଜେଷ୍ଟ କରିବି ବୋଲି ।''

ସତ୍ୟବ୍ରତର ତଣ୍ଟିରେ ଅଟକି ଗଲା ପାନୀୟ । କାଶି ଉଠିଲା ସେ । ପଚାରିଲା ''ମୋ ନାଁଟା ସାଜେଷ୍ଟ କରିବୁ କାହିଁକି ?''

'' ତୁ ପାରନ୍ତୁ । ତୋର ଏଫିସିଏନ୍‌ସି ମୁଁ ତ ଜାଣେ ।''

'' କିନ୍ତୁ ମୁଁ ତ ସୁବ୍ରତ ଉଦ୍ୟାନ ଛାଡ଼ି କୁଆଡେ ଯିବିନି ।''

'' Oh, don't talk rot. There is a pot of money in it. ଅନେକ ଟଙ୍କା ଦରମା ମିଳିବ । ତା ଛଡା ପ୍ରତିପତ୍ତି ।''

''ମୋର ଟଙ୍କା ବି ଦରକାର ନାହିଁ । ପ୍ରତିପତ୍ତି ବି ନା ।''

''ତାମାନେ, ଏଇ ଜଙ୍ଗଲରେ ପଡ଼ି ରହି ଗୋଟାଏ ଚଷା ହବୁ !''

''ସେଇଆ ତ ମୋ ଡେସ୍‌ଟିନି ।''

''ବାଜେ କଥା ।'' ଭାବପ୍ରବଣ ହୋଇଉଠିଲା ଅବନୀ ସୁରାର ପ୍ରତିକ୍ରିୟାରେ । The country needs men like you, honest, efficient, hardworking men who can do the job properly.''

''ସେମିତି ଲୋକ ଢ଼େର, ଅଛନ୍ତି ।''

''କାହିଁ, କିଏ ଅଛି ? ମୋ ଆଖିରେ ତ ପଡୁନି ।''

'' କାହିଁକି ? ତୋର ମହାମହୋପାଧ୍ୟାୟମାନେ । ''

''ଓହୋହୋ'' ହସି ଉଠିଲା ଅବନୀ, '' ତୁ ଜାଣୁନି ପରା ସେ ଗପଟା । ''

ଗିଲାସରୁ ଗୋଟାଏ ବଡ଼ ଢୋକ ନେଇ ଭଲକରି ବସିଲା ଚଉକିରେ ଅବନୀ ।

''ଗଲା ଯୁଦ୍ଧ ବେଳେ ଜାପାନ ତ ଅଧିକାର କରିନେଲା ବର୍ମାକୁ । ମିଲିଟାରୀ ଶାସନ ଚଳିଲା । କମାଣ୍ଡର ତମ୍ବୁ ପକେଇଲେ ଗୋଟାଏ ଫାର୍ମରେ । ସିଭିଲିଆନ କର୍ମଚାରୀଙ୍କୁ କାମ ଦିଆଯିବ । ଆଗ ଡାକରା ପଡ଼ିଲା ଜିଲ୍ଲା କଲେକ୍ଟରଙ୍କୁ । କମାଣ୍ଡାର ତାଙ୍କୁ କହିଲେ— ଆଜି ତୁମର କାମ ହେଲା, ଗୋଟାଏ ଏକର ଜମି ହଳ କରିବାକୁ ହବ । ଯେ ଆଜ୍ଞା, କହି କଲେକ୍ଟର ବାହାରି ଆସିଲେ । ପାଞ୍ଚଟା ବେଳକୁ କମାଣ୍ଡର ଦେଖିଲେ, ତାଙ୍କ ହୁକୁମ ଅକ୍ଷରେ ଅକ୍ଷରେ ପାଳିତ ହୋଇଛି । ଦିନସାରା ଟ୍ରାକ୍ଟର ଚଳେଇ କଲେକ୍ଟର ଜମିକୁ ହଳ କରିଛନ୍ତି । ତହିଁ ଆରଦିନ ପୁଣି ଗଲେ କମାଣ୍ଡାର ପାଖକୁ । କମାଣ୍ଡାର ତାଙ୍କୁ ଗୋଟାଏ ଘର ଭିତରକୁ ନେଇଗଲେ । ଘର ଚଟାଣରେ ଜମା ହୋଇଛି ଆଳୁ । ତାଙ୍କୁ ବରାଦ ହେଲା, ସେ ଆଳୁକୁ ବାଛିବାକୁ ହବ ବଡ଼ ମଧ୍ୟଭଳି ଓ ସାନ — ଏଇ ତିନି ଭାଗରେ । କମାଣ୍ଡାର କାମ ଦେଇ ଚାଲିଗଲେ । ପୂର୍ବଦିନ ଭଳି ପାଞ୍ଚଟା ବେଳକୁ ଆସି ଦେଖିଲେ କଲେକ୍ଟର ଚୁପଚାପ୍ ବସିଛନ୍ତି । କ'ଣ କଥା ? ପଚାରିଲେ 'କିହୋ, କାଲି ତ ତୁମେ ବେଶ୍ ହଳ କଲ । ଆଜି କ'ଣ ହେଲା ? ' ମୁହଁଟାକୁ ବିଷର୍ଣ୍ଣ କରି କଲେକ୍ଟର କହିଲେ, 'ଆଜ୍ଞା ଆମକୁ ସରକାର ଯେଉଁ ଟ୍ରେନିଂ ଦେଇଥିଲେ,ସେଥିରେ ଆଳୁ ବାଛିବା କେବେ ଶିଖାଯାଇ ନଥିଲା । କେଉଁଟା ବଡ଼, କେଉଁଟା ମଧ୍ୟଭଳି ବା କେଉଁଟା ସାନ, ଏ ନିଷ୍ପତ୍ତି ତ ମୁଁ କରିପାରୁନି, ଆଳୁ ବାଛିବି କେମିତି ? ''

ଦୁଇ ବଂଧୁ ହସିଲେ । ଅବନୀ କହିଲା , ''ସେମାନେ ପାରନ୍ତି ସରଳ କାମଟାକୁ ଜଟିଳ କରିବାକୁ । ସେଥିରେ ସେମାନେ ଓସ୍ତାଦ୍, ବୁଝିଲୁ ଚୌଧୁରୀ ।'' ଅବନୀର ଜିଭ ଲାଗି ଲାଗି ଯାଉଛି ।

ଖାଇବା ଟେବୁଲରେ ନିଷ୍ପତ୍ତି ହେଲା, ତହିଁ ଆରଦିନ ପ୍ରାତରାଶ ସାରି ଦୁଇବଂଧୁ କଟକ ଯିବେ । ସତ୍ୟବ୍ରତ ସନିଆକୁ କହିଲା, କାଲି କଟକ ଯିବାକୁ ହବ ଗାଡି ନେଇ । ସେ ଯିମିତି ପ୍ରସ୍ତୁତ ଥାଏ ।

## ସାତ

ସତ୍ୟବ୍ରତକୁ ଅବନୀ ଘରେ ଛାଡ଼ି ଦେଇ ଗାଡି ନେଇଗଲା ସନିଆ କାରଖାନାକୁ । ଅବନୀ ଡାକିଛି ତାଙ୍କୁ ମଧ୍ୟାହ୍ନ ଭୋଜନକୁ । ରବିବାର । ଦୁଇ ବଂଧୁ ବସିଲେ ବୈଠକଖାନାରେ । ଅବନୀର ସ୍ତ୍ରୀ ଆସି ଯୋଗଦେଲା ।

''ତା'ପରେ, ଏଠି କେତେଦିନ ରହିବେ ମିଷ୍ଟାର ଚୌଧୁରୀ ? '' ପଚାରିଲେ ଅବନୀ ଲଳନା ।

''କାହିଁ ଆଉ ରହିପାରୁଛି ? ଗାଡିଟା ଠିକ୍ ହୋଇଗଲେ ଫେରିବି ? '' ସତ୍ୟବ୍ରତର ଉତ୍ତର ।

''ଆପଣ ତ ଆଜିକାଲି କଟକକୁ ବିଶେଷ ଆସୁନାହାନ୍ତି ? ''

''ସମୟ ପାଉନି । ଚଷାର ଜୀବନ ବର୍ଷାଦିନଟା କାମର ସମୟ । ''

''ତୋତେ କିଏ କହୁଛି ଚଷାର ଜୀବନ ଯାପନ କରିବାକୁ । '' ଅନୁଯୋଗ ଅବନୀର ।

''ଗୋଟାଏ ତ କିଛି କରିବାକୁ ହେବ ପେଟ ପୋଷିବାକୁ । '' କୈଫିୟତ ଦେଲା ସତ୍ୟବ୍ରତ ।

''ବା'ରେ ଆପଣ ବି ଏଇ କଥା କହିଲେ ମିଷ୍ଟାର ଚୌଧୁରୀ । ଆପଣଙ୍କ ପରି ସମ୍ଭ୍ରାନ୍ତ, ଶିକ୍ଷିତ, ଯୋଗ୍ୟ କେତେଜଣ ଅଛନ୍ତି ? '' ଟିପ୍ପଣୀ ଅବନୀର ସ୍ତ୍ରୀର ।

''ସବୁ ଆଜିକାଲି ଅଚଳ ମିସେସ୍ ମହାନ୍ତି । ଗଣତନ୍ତ୍ର ତ ଆମ ଦେଶରେ ଆରମ୍ଭ ହୋଇଛି । ଯେଉଁସବୁ ଦେଶରେ ଗଣତନ୍ତ୍ରର ଚେର ମାଡିଲାଣି, ସେଠି ଗୋଟାଏ ଜିନିଷ କାମରେ ଲାଗେ । ସେଟା ହେଉଛି — କିଛି କର, କାମ କର, ଉତ୍ପାଦନ ବଢ଼ାଅ, ଚାହିଦା ବଢ଼ାଅ । Create more want. ଆମ ପ୍ରଧାନମନ୍ତ୍ରୀ ତ କହିଛନ୍ତି, ''ଆରାମ ହାରାମ ହୈ । ''

''ହଁ, କହିଛନ୍ତି ଯେ, କିନ୍ତୁ ମଣିଷ ବେଶି ଉତ୍ପାଦନ କରିବ କାହିଁକି ? ଆରାମରେ ରହିବା ପାଇଁ ତ, ଆଉ ଆରାମ ଯଦି ହାରାମ ହେଲା, ତା ହେଲେ ଉଆଣ୍ଟ ବଢ଼େଇ ଲାଭ କ'ଣ ? '' କହିଲା ଅବନୀର ସ୍ତ୍ରୀ ।

ହସିଲା ସତ୍ୟବ୍ରତ ତା କଥାରେ, '' ଆପଣଙ୍କ ଯୁକ୍ତି ଅକାଟ୍ୟ; କିନ୍ତୁ ଆମର ଆହୁରି ଦରକାର, ବହୁତ ଦରକାର । ଜାଣନ୍ତି ତ ଆମ ଦେଶ ଭାରି ଗରିବ । ଏଠି ଲୋକେ ଓଳିଏ ବି ପେଟ ପୂରା ଖାଇବାକୁ ପା'ନ୍ତିନି । କାମ ମିଳେନି । ଆପଣ କେବେ କଟକ ଷ୍ଟେସନରେ କଲିକତା ପାସେଞ୍ଜର ଦେଖିଛନ୍ତି ? ପ୍ରତିଦିନ ହଜାର ହଜାର ସଂଖ୍ୟାରେ ଓଡ଼ିଆମାନେ ଯାଉଛନ୍ତି କଲିକତା ବା ତା ଆଖପାଖ ଅଞ୍ଚଳକୁ । ସେଠିକାର କାରଖାନା ମାନଙ୍କରେ ସେମାନେ କାମ କରନ୍ତି । ଏଠି ତାଙ୍କୁ କାମ ଦେଇ ପାରୁନି ଆମ ସରକାର । ''

''ଆମ ସରକାର ତ ସବୁ କରି ପକଉଛନ୍ତି । '' ଜଳି ଉଠିଲା ଅବନୀର ସ୍ତ୍ରୀ, ''ଆପଣ ଜାଣନ୍ତି, ଆମର ଏଇ ଛୋଟ ପରିବାର । ଆମେ ତିନିଜଣ ଆଉ ଚାକର । ପ୍ରତିଦିନ ପାଞ୍ଚଟଙ୍କାର ପନି ପରିବା ନ ଆଣିଲେ ଦି' ଓଳିକୁ ଅଣ୍ଟେନି । ବଜାରକୁ ମଝିରେ ମଝିରେ ମୁଁ ନିଜେ ଯାଏଁ । ଦେଢ଼ ଟଙ୍କା ତଳକୁ କୌଣସି ଜିନିଷ ନାହିଁ । କଖାରୁ କିଲୋ ଟଙ୍କାଏ । ''

ହସି ଉଠିଲେ ଦୁଇ ବନ୍ଧୁ ।

"ସୁନନ୍ଦାର ବରାବର ଅଭିଯୋଗ, ସେ ଆଉ ମୋ ଦରମାରେ ଘର ଚଳେଇ ପାରୁନି।" ଅବନୀ କହିଲା। ସୁନନ୍ଦା ଅବନୀର ସ୍ତ୍ରୀ।

"ବଡ଼ ମୁସ୍କିଲ କଥା ତ !"

"କ'ଣ କହୁଛି ଜାଣୁ ? "

"କ'ଣ କହୁଛି ? ଭୁଲ କହୁଛି ? କୁହ ବଂଧୁଙ୍କୁ କୁହ !" ସୁନନ୍ଦା ଧମକେଇଲା ।

" କହୁଛି, ମୋର କ୍ଲାବ୍‌କୁ ଯିବା ଦରକାର ନାହିଁ। ଗସ୍ତଖର୍ଚ୍ଚ ଟଙ୍କାର ହିସାବ ଏଣିକି ସେ ରଖିବ। "

" ନ ହଉ, ମୋର କ'ଣ ? ଘର କ'ଣ ମୋର ? ତୁମର ଘର, ତୁମ ପିଲା। ତାଙ୍କ ପାଇଁ ନ ରଖିଲେ ! ବଡ଼ଟା ବା ପୁଅ ତା କଥା ଛାଡ; କିନ୍ତୁ ରୁମୁ ? ସେ ଝିଅ — ଆଜିଠୁଁ ସଞ୍ଚୟ ନ କଲେ ତା ବାହାଘର ବେଳକୁ କ'ଣ କରିବ ? "

" ତା ବୋଲି ମୋର ସବୁ ସଉକ ଛାଡ଼ି ଦେବି ? "

"ଗୋଟାଏ ସଉକ ଛାଡନା ତୁମେ । ତା' ହେଲେ ମୁଁ ବଂଚିଯିବି ।" ସୁନନ୍ଦା ଗୋଟିଏ ଦୋକାନୀର ନାମ କହିଲା। "ତାରି ବିଲ୍ ବନ୍ଦ ହଉ। ପ୍ରତି ମାସ ଦେଢ଼ଶ ଦୁଇଶ ଟଙ୍କା। ନ ଦେବାୟ, ନ ଧର୍ମାୟ।"

ଅଭିମାନରେ ଆଖି ଛଳ ଛଳ ହେଲା ସୁନନ୍ଦାର। ସତ୍ୟବ୍ରତ ବୁଝିଲା — ଅବନୀର ଡ୍ରିଙ୍କସ୍ ବିଲ୍ । ତା ଛଡ଼ା କ୍ଲାବ୍ ଅଛି । ସେଠି ତ ସବୁଥିରେ ପଇସା, ତାସ୍ ଖେଳିଲେ ପଇସା, ବିଲିୟାର୍ଡ ଖେଳିଲେ ପଇସା, ପୋକାର, ରାମ୍ମି, ଫ୍ଲାସ୍ ତ ଅଛି।

ପଶି ଆସିଲା ରୁମୁ,ଅବନୀର କନ୍ୟା । ସାତ ଆଠ ବର୍ଷର ଝିଅ — ଅବନୀର ଦ୍ୱିତୀୟ ସନ୍ତାନ। ପ୍ରଥମଟି ପୁଅ, ସେ ହାଇଦ୍ରାବାଦରେ ଗୋଟିଏ ପବ୍ଲିକ୍ ସ୍କୁଲରେ ପଢ଼େ।

"ଓ, ଚୌଧୁରୀ ଅଙ୍କଲ୍। ଆଜି ଆମ ସ୍କୁଲରେ ଫେଟ୍। ତୁମେ ଯିବନି ?"

"ସମୟ ହବନି ଯେ ମାମି।" ସତ୍ୟବ୍ରତ ତାକୁ ନିଜ ଆଡକୁ ଆଉଜେଇ ଆଣିଲା ।

"ବାପା ତୁମେ ଯିବ ତ ?"

"ଦେଖାଯାଉ ।" ଅବନୀ କହିଲା।

"ଦେଖାଯାଉ ନୁହେଁ, ଯିବ । ମା'ତ ଯିବେ। ତୁମେ କ'ଣ କିଣିବ ମା' ?"

"କିଛିନା" — ସୁନନ୍ଦାର କଣ୍ଠରେ ବିରକ୍ତି। "ଏ ଗୋଟାଏ ଫିସାଦି ବୁଝିଲେ ନା ଚୌଧୁରୀ ସାହେବ ? ପ୍ରତି ତିନି ମାସରେ ଫେଟ୍, ମୀନାବଜାର, ଫାଉଣ୍ଡାର୍ସ ଡେ। ପାଠ ପଢ଼ା ତ ହଉନି — ଏଇୟା ହଉଛି।"

"ତୁମେ ଏମିତି ରାଗୁଛ କାହିଁକି ମା' ? ଦେଖୁଛ ଆଙ୍କଲ୍ ମା' ମୁହଁକୁ।" ରୁମୁ କହିଲା।

"ତୁମେ କ'ଣ କିଣିବ ଫେଟ୍‌ରୁ ଠିକ୍ କରିଛ ?" ସତ୍ୟବ୍ରତ ପଚାରିଲା ରୁମୁକୁ।

''ଏଁ କ'ଣ କିଣିବି ? ରୁହ ମୁଁ ଭାବେ । '' ଭାବିଲା ରୁମୁ ।

''ନିଆଁ ପାଉଁଶ କିଣିବ । କ'ଣ ଥାଏ ସେଠି ? ଗୁଡାଏ ଖେଳନା ଆଉ ପେଷ୍ଟ୍ରି କେକ୍ ଏଇ ତ । ଗୋଟାଏ ପେଷ୍ଟ୍ରିର ଦାମ ପଚାଶ ପଇସା । ଗୋଟାଏ କୋକାକୋଲା ଟଙ୍କାଏ । ଡକାଏତି ।'' ସୁନନ୍ଦାର ହୁଙ୍କାର ।

''ଓ ମା, ତୁମେ କି ନିଷ୍ଠୁର । '' ରୁମୁ ପ୍ରାୟ କାନ୍ଦିବା ଉପରେ ।

ହସି ଉଠିଲେ ଦୁଇ ବଂଧୁ । ସୁନନ୍ଦା ମଧ ହସି ପକାଇଲା ରୁମୁ କଥାରେ ।

''ମୁଁ ଯାଏଁ'' ସୁନନ୍ଦା ଉଠିଲା । ''ଚାକର ବି ଯୋଟିଛି ଠିକ୍ । '' ସେ ଚାଲିଗଲା ।

ସତ୍ୟବ୍ରତ ରୁମୁକୁ ପଚାରିଲା, ''ମୋ ପାଇଁ ଗୋଟାଏ ଖେଳନା ଆଣିପାରିବ ମାମି ?''

''କି ଖେଳନା ? '' ଖୁସି ଗଳା ରୁମୁର ।

''ଯଉଁଟା ତୁମକୁ ସବୁଠୁଁ ଭଲ ଲାଗିବ । ''

'' ହଁ ଆଣିବି; କିନ୍ତୁ ଟଙ୍କା ?''

''ମୁଁ ଦେବି । '' ପକେଟରୁ ଗୋଟିଏ ନୋଟ୍ କାଢ଼ି ବଢ଼େଇଦେଲା ସତ୍ୟବ୍ରତ ରୁମୁକୁ । ପଚାରିଲା, ''ହବ ତ ?''

''ଖୁବ୍ । '' ରୁମୁ ଖୁସି ହୋଇ ନେଲା । ''ଏଥିରେ ଦୁଇ ତିନିଟା ଖେଳନା ହବ । ''

''ନା, ଏତେ ଖେଳନା କ'ଣ ହବ ? ଖାଇବନି କିଛି ? କେଶ୍ୟୁନାଟ୍, ଚେନୋଚୂର୍, ପେଷ୍ଟ୍ରି, କେକ୍ ? ''

''ଓ ଆଙ୍କଲ୍, '' ପାଟିରୁ ଲାଳ ବୋହିଲା ରୁମୁର । ପଚାରିଲା ସେ '' ଏଇ ଟଙ୍କାରୁ ?''

'' ହଁ ସେ ଟଙ୍କା ତୁମର, ଫେଟ୍‌ରେ ଖର୍ଚ୍ଚ କରିବ । ମୋ ପାଇଁ ଖାଲି ଗୋଟିଏ ଖେଳନା ଆଣିବ । ''

''କ'ଣ କରିବ ଖେଳନା । ସୁବ୍ରତ ପାଇଁ, ନା ? ''

''ହଁ । ''

''ଆଚ୍ଛା ଆଣିବି । '' ନୋଟ୍ ନେଇ ଖୁସି ହୋଇ ସେ ଚାଲିଗଲା ।

''ତୁ ଟିକିଏ ଖର୍ଚ୍ଚ କମା ଥବନୀ । '' ସତ୍ୟବ୍ରତ ଉପଦେଶ ଦେଲା । ''ତୋର ଫେମିଲି ଅଛି । ''

''କମେଇଛି ଅନେକ । ସୁନନ୍ଦା ଯଉ ବିଲ୍ କଥା କହିଲା, ସେଟା ଛ'ମାସ ଆଗର । ଶୀତ ଦିନର । ''

''ହେଲେ ବି । You must gird your loins. ଘର ଚଳାନ୍ତି ସେ, ତୁ ନୋହୁଁ । ସେ ଜାଣନ୍ତି କାମୁଡାଟା କଉଠି ବେଶି । ''

ରୁମୁ ପଶି ଆସିଲା — ''ବାପା, ଆଙ୍କ୍‌ଲ, ଲାଞ୍ଚ ରେଡି, ଆସ । ''

ଉଠି ପଡ଼ିଲେ ଦୁଇ ବଂଧୁ ।

# ଆଠ

ସତ୍ୟବ୍ରତ ଆଗେଇ ଚାଲିଛି ସଡକରେ । ଆକାଶଟା ଭୀଷଣ ମେଘାକ୍ରାନ୍ତ । ଯେ କୌଣସି ମୂହୂର୍ତ୍ତରେ ବର୍ଷା ହୋଇପାରେ । ଯୋରେ ଯୋରେ ପାଦ ଚଳେଇଲା ସେ । ଅବନୀ ଘରୁ ଖାଇସାରି ଫେରୁଛି ସେ କେଣ୍ଟନମେଣ୍ଟ ରୋଡରୁ । ଯିବ କଟକଚଣ୍ଡୀ, ତା ଘର ସେଠି । ଷ୍ଟେଡିୟମ ପାଖରେ କିଏ ତାକୁ ପଛରୁ ଡାକିଲା । ଠିଆ ହୋଇପଡ଼ି ଘୂରି ପଛକୁ ଚାହିଁଲା । ଇନ୍ଦିରା ବସିଛି ଗୋଟାଏ ରିକ୍‌ସାରେ । ତା ଆଡକୁ ଚାହିଁ ହସୁଛି । ହଠାତ୍ ବର୍ଷା ପଡ଼ିଲା, ଟପ୍ ଟପ୍ ଟପ୍ ।

''ଉଠି ଆସନ୍ତୁ ରିକ୍‌ସାକୁ'', ଡାକିଲା ଇନ୍ଦିରା । ଘୁଞ୍ଚିଯାଇ ସତ୍ୟବ୍ରତ ପାଇଁ ଜାଗା କଲା । ସତ୍ୟବ୍ରତ ଠିକ୍ କରିପାରୁନି ରିକ୍‌ସାକୁ ଉଠିବ କି ନା । ବର୍ଷାର ଟୋପାଗୁଡା ବଡ଼ ବଡ଼ ହେଉଛି । ମହାନଦୀ ଉପରଟା ମେଘରେ କଳା ଦିଶୁଛି ।

''ଉଠି ଆସନ୍ତୁ । ବର୍ଷାରେ ତିନ୍ତିବେ କାହିଁକି ? '' ପୁଣି ଡାକିଲା ଇନ୍ଦିରା ।

ଉଠି ପଡ଼ିଲା ସତ୍ୟବ୍ରତ ରିକ୍‌ସା ଉପରକୁ । ବସିଲା ଇନ୍ଦିରାର ଦେହକୁ ଲାଗି । ତା ନାକରେ ବାଜିଲା ସେଇ ବାସ୍ନା, ତକିଆରେ ଯାହାକୁ ରଖି ଆସିଥିଲା ଇନ୍ଦିରା ।

''ଆପଣ କୁଆଡେ ଯାଉଛନ୍ତି, ଏ ପାଗରେ ? '' ପଚାରିଲା ସତ୍ୟବ୍ରତ ।

''ଘରକୁ ଫେରୁଛି । ଯାଇଥିଲି ମେଡିକାଲ କଲେଜ । ''

''ଆପଣଙ୍କ ଘର କେଉଁଠି ?''

''ଏଇ ଆଗରେ । କଟକଚଣ୍ଡୀ ପାଖରେ । ''

''ମେଡିକାଲ କଲେଜକୁ କାହିଁକି ଯାଇଥିଲେ ?''

''ପ୍ରଫେସର ନନ୍ଦଙ୍କ ସାଙ୍ଗରେ ଦେଖା କରିବାକୁ । ମୁଁ ଭାବୁଛି ପୋଷ୍ଟଗ୍ରାଜୁଏଟ୍ କରିବି । '' ଇନ୍ଦିରା କହିଲା ।

''ବେଶ୍ । ଭଲ କଥା । ''

ରିକ୍‌ସା ପହଞ୍ଚିଲା ଛକରେ । ''ବର୍ଷା ବଢ଼ିଛି । ଆପଣ କୁଆଡେ ଯିବେ ? ''ପଚାରିଲା ସତ୍ୟବ୍ରତ ।

''ସିଧା ଆଉ ଟିକିଏ ଆଗକୁ । ଆପଣ ବି ଆମ ଘରକୁ ଯାଉଛନ୍ତି । ''

''ନା ଇନ୍ଦିରା ଦେବୀ, ମୋତେ ଆଉ କାହିଁକି ...? ''

''କିଛି ଶୁଣିବିନି ମୁଁ ଆପଣଙ୍କ କଥା । ''

''ଇମିତି ଯିବା ? ଗୋଟାଏ ରିକ୍‌ସାରେ ? ଆମକୁ ଦେଖିଲେ କ'ଣ ଭାବିବେ ଆପଣଙ୍କ ଘରେ ? ''

ଇନ୍ଦିରା ମୁହଁ ବୁଲେଇ ଅନେଇଲା ସତ୍ୟବ୍ରତକୁ, ''ମୋର ବରାବର ଧାରଣା ଥିଲା ଝିଅମାନେ ଲାଜ କରନ୍ତି ବୋଲି । ଆପଣ ତ ଝିଅଙ୍କୁ ବଳିଗଲେ !''

ହସିଲା ସତ୍ୟବ୍ରତ । ''ଲାଜ ନୁହେଁ ଇନ୍ଦିରା ଦେବୀ, ପ୍ରୋପ୍ରାଇଟି, ଔଚିତ୍ୟବୋଧ ।''

''ସେଟା ମୋର ବି ଅଛି । ''

ରିକ୍ସା ଆସି ଠିଆ ହେଲା ଇନ୍ଦିରା ଘର ଆଗରେ । ଆଗ ଓହ୍ଲେଇ ପଡ଼ିଲା ଇନ୍ଦିରା । ସତ୍ୟବ୍ରତକୁ ଡାକିଲା, ''ଓହ୍ଲାନ୍ତୁ, ଏଟା ଆମ ଘର । ''

ସତ୍ୟବ୍ରତ ଓହ୍ଲେଇଲାରୁ ପିଣ୍ଡାକୁ ଉଠିଲେ ଦୁଇଜଣ । ଇନ୍ଦିରା ରିକ୍ସାକୁ ବିଦା କରି ସତ୍ୟବ୍ରତକୁ ଘର ଭିତରକୁ ନେଇଗଲା । ଗୋଟାଏ ଚେୟାରରେ ତାକୁ ବସେଇ ଡାକିଲା, ''ବୋଉ, କିଏ ଆସିଛନ୍ତି ଦେଖ ?''

ପଶିଗଲା ସେ ଘର ଭିତରକୁ । ସତ୍ୟବ୍ରତ ଅନେଇଲା ଚାରିଆଡକୁ । ଛୋଟ ଘରଟିଏ । ଟେବୁଲ ଉପରେ କେତେଖଣ୍ଡ ବହି, ଖାତା । ଗୋଟାଏ ଖଟରେ ବିଛଣା ପଡ଼ିଛି । କାଛରେ ଡେରା ହୋଇଛି ଲାଲ କନାର ଦି'ଟା ଡେକ୍ ଚେୟାର ।

ବୋଉ ଆସିଲେ । ବିଧବା ବ୍ରାହ୍ମଣୀ । ବୟସ ପଚାଶ ପାଖାପାଖି, କିନ୍ତୁ କି ସୁନ୍ଦର ଚେହେରା । ଖୁବ୍ ଧଳା ଗୋରା । ଆଖିଗୁଡା ବଡ଼ ବଡ଼ । ଇନ୍ଦିରା ପାଇଛି ତା ବୋଉଠୁଁ ତାର ଆଖି । ସତ୍ୟବ୍ରତ ଠିଆ ହୋଇପଡ଼ି ନମସ୍କାର କଲା । ''ବସ ବାପା ବସ । ଚୁନିଠୁଁ ଶୁଣିଲି ସବୁ କଥା । ଲୋଇଁ ବି କହୁଥିଲେ । ଭାଗ୍ୟ ତୁମେ ସେଠି ଥିଲ ବୋଲି... । ନ ହେଲେ ସେଇ ଦୁର୍ଯୋଗ ରାତିରେ — ଜଙ୍ଗଲରେ କ'ଣ କରିଥାନ୍ତେ ଏମାନେ ?''

''ମୋର ନାନୀ ଆସିଛି ମିଷ୍ଟାର ଚୌଧୁରୀ । '' ଇନ୍ଦିରା ସାଙ୍ଗରେ ପଶି ଆସିଲେ ଶ୍ରୀମତୀ ହୃଷୀକେଶ । ବାଃ ଅପୂର୍ବ ସୁନ୍ଦରୀ ଇନ୍ଦିରାର ନାନୀ । ଇମିତି ସ୍ତ୍ରୀ ହୃଷୀକେଶ ବାବୁଙ୍କର । ବିଚାରିର ଆଉ ଅନ୍ୟ ଉପାୟ କ'ଣ ଅଛି, ଯାଙ୍କ ହାତରେ ସବୁ ଛାଡ଼ିଦବା ଛଡ଼ା ।

ହସି ହସି ଆରମ୍ଭ କଲେ ନାନୀ, ''ଆପଣଙ୍କ ସେଠୁ ଫେରି ଚୁନି ଆଉ ତା ଭିଣୋଇ ସବୁବେଳେ ତ ଆପଣଙ୍କ କଥା କହୁଛନ୍ତି । ଆପଣଙ୍କ ପରି ଲୋକ ସେମାନେ ଦେଖି ନଥିଲେ ।''

''କଥାଟା ଯେ ମିଛ । ମୋତେ ଦେଖିବା ପରେ ଆପଣ ବୁଝି ପାରୁଥିବେ । ''

''କିମିତି, କିମିତି ?'' ଜିଜ୍ଞାସା କଲା ଇନ୍ଦିରା ।

ଖଟରେ ବସି ପଡ଼ିଲା ସେ ।

''ଏଇ ମୋ ପରି ଗୋଟା ଅତି ସାଧାରଣ ମଣିଷ, ଜଙ୍ଗଲରେ ଥାଏ ,ଚାଷ କରି ଜୀବିକା ନିର୍ବାହ କରେ... । ''

''ଏଟା ଆପଣଙ୍କ ବିନୟ ମିଷ୍ଟାର ଚୌଧୁରୀ । ଆପଣ ଯେ କ'ଣ, ମୁଁ ଜାଣେ ?''

''କ'ଣ ଜାଣନ୍ତି ମୋ କଥା ଆପଣ ? '' ହସି ପଚାରିଲା ସତ୍ୟବ୍ରତ ।

''କହିବି । କିନ୍ତୁ ତା ଆଗରୁ... । ବୋଉ । ମିଷ୍ଟାର ଚୌଧୁରୀଙ୍କୁ କିମିତି କ'ଣ ଚର୍ଚ୍ଚା କରିବା । ଆମେତ ଗରିବ । ତଥାପି ...''

ହାତଯୋଡି ଠିଆ ହୋଇ ପଡ଼ିଲା ସତ୍ୟବ୍ରତ । ''ମୁଁ ଏଇକ୍ଷଣି ଅବନୀ ଘରେ ପେଟେ ଖାଇ ଆସିଛି । ମୋତେ ମାଫ୍ କରନ୍ତୁ । ''

ହସି ପକେଇଲା ଇନ୍ଦିରା । ''ଆପଣ ବସନ୍ତୁ । କେହି ଆପଣଙ୍କୁ ଜୋର୍ ଜବରଦସ୍ତ କରିବନି ଏଠି । ଆମର ବି ଆପଣଙ୍କ ପରି ପ୍ରଚୁର ନାହିଁ ଯେ...''

''ଇନ୍ଦିରା ଦେବୀ !'' ଅନୁଯୋଗ କଲା ସତ୍ୟବ୍ରତ ।

ତା ନାନୀ ଆସି ଇନ୍ଦିରା ପାଖରେ ବସିଲେ ।

କଥା ଆରମ୍ଭ କଲା ଇନ୍ଦିରା, ''କେବେ କଟକ ଆସିଲେ ?''

''ଆଜି ସକାଳୁ । ''

''ମୋ ଚିଠି ପାଇଥିଲେ ? ''

''ହଁ ।''

''ଆପଣଙ୍କ ଘର ତ ଏଇଠି ପାଖରେ ?''

''ହଁ ।''

''ରହିବେତ ଏଠି କିଛି ଦିନ ? ''

''ନା । ଗାଡିଟା ମରାମତି ହଉଛି । ସରିଗଲେ ଫେରିବି । ''

''ସାଙ୍ଗରେ କିଏ ଆସିଛି, ସନିଆ ?''

''ହଁ । ''

''ଆପଣଙ୍କ ଏଠିକା ଘରେ ତ କେହି ଥାଏନି । ଗୋଟିଏ ମାଳୀ ଛଡ଼ା ? ''

''ନାଁ । ''

''ତା ହେଲେ ଖିଆପିଆ କେମିତି ହବ ? ସନିଆ ରାନ୍ଧିବ ?''

''ହଁ । ''

'' ତା ପାଇଁ ତ ଆୟୋଜନ କରିବାକୁ ହବ ?''

''ଯେ ରାନ୍ଧିବ, ସେ ଆୟୋଜନ କରିବ । ''

''ମୁଁ କଣ କହୁଥିଲିକି ...?'' କଥାଟା ସାରିଲା ନାହିଁ ଇନ୍ଦିରା ।

''କହନ୍ତୁ । ''

''ଆଜି ରାତିରେ ଏଠି ଖାଇବେ । ସନିଆ ବି । ମୁଁ କହୁଥିଲି, ଆପଣ ଫେରିବା ପର୍ଯ୍ୟନ୍ତ ଏଠି ଖାନ୍ତେ । ''

''ଦେଖନ୍ତୁ ଆପଣଙ୍କ ଭଉଣୀକୁ, '' ସତ୍ୟବ୍ରତ କହିଲା ତା ନାନୀକୁ । ''ମୋର କଟକ ଆସିବା ବାଟଟା କିମିତି ବନ୍ଦ କରୁଛନ୍ତି ସେ । ''

''ମୋଟେ କରୁନି । ଆପଣ ଆମପାଇଁ ଯାହା କରିଛନ୍ତି, ବର୍ଷ ବର୍ଷ ଧରି ଆପଣଙ୍କୁ ଖୋଇଲେ ବି ସେ ଋଣ ସୁଝିବ ନାହିଁ । ''

''ବଡ଼ ବଢ଼ଉଛନ୍ତି ଆପଣ । ମଣିଷ ପ୍ରତି ମଣିଷ ଯେତିକି କରିବା ଉଚିତ, ମୁଁ ସେତିକି କରିଛି । ''

''ସେଟା ଯେ କେତେ — ସେ କଥା ମୁଁ ଜାଣେ । ''

ବୋଉ ଭିତରୁ ଡାକିଲେ । ତା ନାନୀ ଉଠିଗଲେ । ଦୁଇ ମିନିଟ୍ ଚୁପ୍ ଚାପ୍ । ଇନ୍ଦିରା କ'ଣ ଭାବୁଛି । ଗୋଟାଏ ଦୀର୍ଘ ନିଶ୍ୱାସ ପକେଇଲା ସେ ।

''ଆପଣଙ୍କ କଥା ସେଇ ମାଳୀଠୁଁ ଶୁଣିଲି ସବୁ । ''

''କ'ଣ ଶୁଣିଲେ ?'' ସିଧା ହୋଇ ବସିଲା ସତ୍ୟବ୍ରତ ।

''ଆପଣ ଏମ୍.ଏ ପାଶ୍ କରିଛନ୍ତି । ସୁନ୍ଦର ବେହେଲା ବଜାନ୍ତି । ଛବି ଆଙ୍କନ୍ତି ...''

ହସି ଉଠିଲା ସତ୍ୟବ୍ରତ ହୋ ହୋ କରି, ''ମାନେ, ଆପଣ ଡିଟେକ୍‌ଟିଭ୍ । କିନ୍ତୁ କାହିଁକି ? ମୋ ବିଷୟରେ ଆପଣଙ୍କ ଏ କୌତୂହଳ କାହିଁକି ?

''ଆପଣ ନିଜକୁ ଇମିତି ଫାଙ୍କି ଦଉଛନ୍ତି କାହିଁକି ?''

''ମାନେ ? '' ଗମ୍ଭୀର ହୋଇଗଲା ସତ୍ୟବ୍ରତ । କ'ଣ କହୁଛି ଇନ୍ଦିରା ।

ସୁମଧୁର ହସଟିଏ ହସି କହିଲା ଇନ୍ଦିରା, ଆପଣ ଜାଣନ୍ତି ମୁଁ କ'ଣ କହୁଛି । ଆଚ୍ଛା ଆପଣଙ୍କ ସ୍ତ୍ରୀ ଖୁବ୍ ସୁନ୍ଦର ଥିଲେ ନା ?''

ସତ୍ୟବ୍ରତ ତା ମୁହଁକୁ ବଲବଲ କରି ଅନେଇଲା ।

''ଆପଣଙ୍କୁ ତ ଦେଖିଲି । ସୁବ୍ରତକୁ ଦେଖିଲେ ବାକିଟା ବୁଝାଯିବ । କିନ୍ତୁ, ସୁବ୍ରତର ମା'ତ ସାତ ଆଠ ବର୍ଷ ହେଲା ମରିଗଲେଣି । ''

''ହଁ ।''

''ତା' ପରେ ଆପଣଙ୍କ ବାପା ମରିଗଲେ । ଆପଣ ସବୁ ଛାଡିଛୁଡି ଦେଇ ପଳେଇଲେ ଜାପାନ । ''

''ହଁ । ''

''ସେଠି ତିନିବର୍ଷ ଥିଲେ । ''

''ହଁ, ଜାପାନରେ ଥିଲି ଦୁଇବର୍ଷ । ବାକିଟା ଫିଲିପାଇନସ୍‌ରେ । କ୍ୟୁବାରେ ବି ଥିଲି ତିନିମାସ । ଆପଣ ମୋର ସବୁ ଖବର ଜାଣନ୍ତି ଇନ୍ଦିରା ଦେବୀ । ''

''କିନ୍ତୁ ଅସଲ ଖବରଟା ଜାଣିପାରୁନି ଏବଂ ଆପଣ ନ କହିଲେ ସେଟା ଜାଣିବା ସମ୍ଭବ ନୁହେଁ । ''

ସାବଧାନ ହେଲା ସତ୍ୟବ୍ରତ , '' ତାହେଲେ ସେଟା ଅଜଣା ରହୁ । ''

"କାହିଁକି ?" ଇନ୍ଦିରା ଆକ୍ରମଣ କରୁଛି ।

"I most know it, I shall have to know it."

ହାତ ଯୋଡ଼ିଲା ସତ୍ୟବ୍ରତ, "ଇନ୍ଦିରା ଦେବୀ ପ୍ଲିଜ୍ ।"

ହସି ପକେଇଲା ଇନ୍ଦିରା, "ଜାଣନ୍ତି ମିଷ୍ଟାର ଚୌଧୁରୀ । ହେରିଡିଟି ପଢ଼େଇଲାବେଳେ ଆମ ପ୍ରଫେସର ବରାବର କହୁଥିଲେ..."

"ଆପଣଙ୍କ ପ୍ରଫେସରଙ୍କର ଜୟ ହେଉ । କିନ୍ତୁ ମୋର ପିତୃପୁରୁଷଙ୍କର ଖବର ଆପଣ ନେଇ କ'ଣ କରିବେ ?"

" ସେ ଖବର ମୁଁ ନଉନି । ସେ ବିଷୟରେ ଯାହା ଜାଣିବା କଥା, ଆପଣଙ୍କ ମାଈ ମୋତେ କହିଛି । ମୁଁ ଜାଣିବାକୁ ଚାହୁଁଛି ଆପଣଙ୍କୁ । "

"କାହିଁକି ?"

"ମୋର ଦରକାର ।" ଇନ୍ଦିରାର ମୁହଁ ସେମିତି ହସହସ ।.

"କ'ଣ ଦରକାର ମୋତେ କହିବେ ନାହିଁ ?"

"ନା । ଖାଲି ଏତିକି ଜାଣନ୍ତୁ ମୁଁ ଡାକ୍ତର ।"

"ମୁଁ ତ ଆପଣଙ୍କର ପେସେଣ୍ଟ ନୁହେଁ ।

"ନୁହଁନ୍ତ ?" ଇନ୍ଦିରା ତାକୁ କବଳିତ କରୁଛି ସିମିତି ।

ସତ୍ୟବ୍ରତ ବିବ୍ରତ ହେଲା । ଜବାବ ନ ଦେଇ ବସି ରହିଲା ।

"ଆପଣଙ୍କର ଚିକିତ୍ସା ଦରକାର ଏବଂ ସେ ଚିକିତ୍ସା ମୁଁ କରିବି । I will cure you of your obsessions."

ବୋଉ ପଶି ଆସିଲେ — ହାତରେ ପାଣି ଗିଲାସ ।

"କିଛି ନାହିଁ ବାପା । ତୁମେ ବାସୁଦେବ ଚୌଧୁରୀଙ୍କ ନାତି । ତୁମକୁ ଖୋଇବାକୁ ଶକ୍ତି ଆମର ନାହିଁ । ଆଜି ଚିତଉ ଅମାବାସ୍ୟା । ପିଠା କରିଛି । ଖଣ୍ଡିଏ ଖାଇବନି ?"

ସତ୍ୟବ୍ରତ ହସିଲା । ଇନ୍ଦିରା କହିଲା, "ତୁ ଆଣ ବୋଉ । ଆମେ ବି ମଣିଷ । ଆମର ଖାଦ୍ୟ କ'ଣ ଇମିତି ଅଖାଦ୍ୟ,ଯେ ରୁଚିବ ନାହିଁ ।"

ବୋଉ ଡାକିଲେ, " ଆଲୋ କୁନି, ଆଣ ।"

ଇନ୍ଦିରା ନାନୀ ଆସିଲେ । ଗୋଟିଏ ରୂପା ଥାଳିରେ ସଜାହୋଇଛି ଚିତଉ ପିଠା । ରୂପା ଗିନାରେ ଦୁଧ, କଦଳୀ, ରସଗୋଲା । ସତ୍ୟବ୍ରତ ଆଗରେ ରଖାଗଲା ଥାଳି । ସେ ଏ ଆୟୋଜନ ଦେଖି କୁଣ୍ଠିତ ହେଲା, "ଏ କ'ଣ ମାଉସୀ ? ଏ ଯେ ଅନେକ ଖାଦ୍ୟ ।"

"ଯେତିକି ଭଲ ଲାଗିବ ଖାଅ । ଆସ, ହାତ ଧୁଅ ।"

ଗୋଟାଏ ପଲମ ଧଇଲେ ସେ, ସତ୍ୟବ୍ରତ ହାତ ଧୋଇ ପିଠାରୁ ଖଣ୍ଡେ ଭାଙ୍ଗି ପାଟିରେ ପକେଇଲା, " ଆପଣ ମୋ ଜେଜେଙ୍କୁ ଚିହ୍ନିଲେ କିମିତି ?"

" ସେ ଆମ ଜମିଦାର ଥିଲେ । ମୋ ବାପା ତାଙ୍କ ତହସିଲଦାର ଥିଲେ । କୃପାସିନ୍ଧୁ ଦାସ । "

"ଆଚ୍ଛା । ସିନ୍ଧୁ ଅଜାଙ୍କ ଝିଅ ଆପଣ ? ମୁଁ ତାଙ୍କୁ ଦେଖିଛି ପିଲାବେଳେ । ଦାଢ଼ି ରଖିଥିଲେ ସେ । ମୁଁ ସେ ଦାଢ଼ିକୁ ଟାଣିଛି କେତେଥର । " ସତ୍ୟବ୍ରତ ହସି କହିଲା । "ତା ' ପରେ ମୁଁ ପଢ଼ିବାକୁ ଗଲି କଟକ । ଥରେ ଛୁଟିରେ ଆସି ଶୁଣିଲି ସେ ମରି ଯାଇଛନ୍ତି । ତା' ପରେ ତ ମୁଁ ବାହାରେ ବାହାରେ । "

"ଦୁଧରେ ଚିତଉ ପିଠା ବୁଡେଇ ଖାଆନ୍ତି । " ବଢେଇ ଦେଲେ ନାନୀ । " ଚିନି ଦେବି ?" ପଚାରିଲେ ସେ ।

"ନା,ଏ ବେଶ୍ ଲାଗୁଛି । କି ନରମ ପିଠା ! ନଡ଼ିଆ ପଡ଼ିଛି ନା ? ଏ ଖାଦ୍ୟ ମୁଁ ଅନେକ ଦିନୁ ଖାଇନି, ବୋଉ ମଲାପାଖରୁ । "

"ମୁଁ ଶୁଣିଥିଲି ବାପା, ତୁମେ ବିକ୍ରମପୁର ଚୌଧୁରୀ ଘରେ ବିଭା ହୋଇଥିଲ । ଖୁବ୍ ବାଣ ଫୁଟିଥିଲା ଏଠି । ବହୁତ ଲୋକ ଖାଇଥିଲେ । ସାତଦିନ ଧରି । "

"ହଁ, ସେ ଅନେକ ଦିନର କଥା । "

"ଏଇ ସେ ଦିନତ । ଆମର ଏ ଘର ହେଲାଣି ସେତେବେଳକୁ । ବାର ବର୍ଷ ହବ ।"

"ହଁ । "

"ତା'ପରେ ଶୁଣିଲି ତୁମ ବାପାଙ୍କର କାଳ ହୋଇଗଲା । ସେଇଦିନୁ ଚୌଧୁରୀ କୋଠି ଖାଲି ପଡ଼ିଛି । ତୁମେ ଆସି ରହୁନା ବାପା ? ସେ କୋଠିକୁ ଅନେଇଲେ ମନ କ'ଣ ହୋଇଯାଏ । କେତେ କେତେ ମଣିଷ ଥିଲେ ସେମାନେ, ତୁମ ବାପା, ଜେଜେ ।

ସତ୍ୟବ୍ରତ ନୀରବରେ କଦଳୀରୁ ଚୋପା ଛଡଉ ଥାଏ ।

"ଆଜି ରାତିରେ ଏଠି ଖାଇବ ବାପା । ଗରିବ ମାଉସୀର ଗରିବ ଖାନା । ତୁମେ ତ ଆମ ଜମିଦାର । ଆଉ ଯିଏ ଯାହା କହୁ, ଏ କଥାଟା ମୁଁ ବଞ୍ଚିଥିବା ଯାକେ ଭୁଲି ପାରିବିନି ।"

ସତ୍ୟବ୍ରତର ମନ ଫେରିଯାଇଛି ପୁରୁଣା ଦିନଗୁଡାକୁ । ଡିହ ସାହିକୁ । ପାଣି ଗିଲାସ ଉଠେଇନେଇ ପିଇଲା । ଇନ୍ଦିରାର ବୋଉ ବୁଝିଲେ, ବଳେଇଲେ ନାହିଁ । ହାତ ଧୋଇଲା ସତ୍ୟବ୍ରତ । ଉଠିପଡ଼ି ବାହାରକୁ ଅନେଇଲା । ବର୍ଷା କମିଗଲାଣି । ସମସ୍ତଙ୍କ ଆଡକୁ ଅନେଇ କହିଲା, "ମୁଁ ଏଥର ଯାଏଁ ?"

ବୋଉ କହିଲେ, "ସନ୍ଧ୍ୟାବେଳକୁ ଆସିବ ବାପା । ମୁଁ ପୁଅକୁ ପଠେଇବି ।"

"ଆସିବି । "

"ସନିଆ ବି ଏଠି ଖାଇବ । " ଇନ୍ଦିରା କହିଲା ।

"ସନିଆ କିଏ ? " ନାନୀ ପଚାରିଲେ ।

"ଜମିଦାର ସାହାବଙ୍କର ଖାସ ଚାକର ।"

ସତ୍ୟବ୍ରତ ତା ଆଡକୁ ଚାହିଁ ମୁରୁକି ମୁରୁକି ହସୁଥାଏ ।

''ହଁ, ସେ ବି ଆସିବ । '' ବୋଉ କହିଲେ ।

''କିନ୍ତୁ ମଣିମା ଯିବେ କିମିତି ?'' ଇନ୍ଦିରାର ପରିହାସ । '' ବର୍ଷା ତ ଛାଡ଼ିନି । ''

''ଏଇ ତ ଆଗରେ । ମୁଁ ଚାଲିଯିବି । ''

''ଉଁ ହୁଁ । ସେ କଥା ହବନି ହଜୁର । ଜମିଦାର ସାହେବଙ୍କୁ ପ୍ରଜା ଗୋଟାଏ ଛତା ଦେଇ ପାରିବନି, ଏ କି କଥାର କଥା ଗୋଟାଏ । '' ସେ ଯାଇ ଘର ଭିତରୁ ଛତାଟିଏ ଆଣିଦେଲା । ବଳେଇ ଦବାକୁ ସତ୍ୟବ୍ରତ ସାଙ୍ଗରେ ଦାଣ୍ଡ ପିଣ୍ଡାକୁ ଗଲା । ମିଠା ହସ ହସି କହିଲା, ''ଆସିବେ ସାତଟା ବେଳକୁ । ଡେରି କରିବେନି । ଆଉ ନୀଡ୍ ଇଉ । ''

''କ'ଣ ଚିକିତ୍ସା ଆରମ୍ଭ ହବ ?''

''ଚିକିତ୍ସା ? ସେ ତ ଆରମ୍ଭ ହୋଇ ସାରିଛି । ସିମ୍‌ଟମ୍ ଗୁଡ଼ା ସବୁ ଜଣା ପଡ଼ିନି , ଏଇ ଯା ।''

''ଆପଣଙ୍କ ଡାକ୍ତରୀ ବିଦ୍ୟା ଯେ କେତେ ଦୂର, ମୁଁ ବୁଝି ପାରୁଛି । ''

'' ତା ହେଲେ ଆପଣ ନିଶ୍ଚୟ ଆସିବେ । ''

ଇନ୍ଦିରା ଆଡକୁ ଗୋଟାଏ ମୁଗ୍ଧ ଦୃଷ୍ଟି ପକେଇ, ଛତା ଖୋଲି, ପିଣ୍ଡା ତଳକୁ ଓହ୍ଲେଇ ପଡ଼ିଲା ସତ୍ୟବ୍ରତ ।

## ନଅ

ସାତଟା ବାଜିବାକୁ ପାଞ୍ଚ ମିନିଟ୍ ଥାଏ, ଇନ୍ଦିରା ପଠେଇଲା ତା ସାନଭାଇ ମନୁକୁ ଚୌଧୁରୀ କୋଠିକୁ । ଦଶମିନିଟ ପରେ ଫେରି ଆସିଲା ମନୁ । ସତ୍ୟବ୍ରତ ଚୌଧୁରୀ କୁଆଡେ ଯାଇଛନ୍ତି, ଫେରି ନାହାନ୍ତି ।

''ଅପେକ୍ଷା କଲୁନି ? ପଚାରିଲୁନି, କୁଆଡେ ଯାଇଛନ୍ତି ?''

''କେହି କହି ପାରିଲେନି ନାନୀ । ''

''ଆଚ୍ଛା । '

ଇନ୍ଦିରା ପଶିଗଲା ଘର ଭିତରକୁ । ତା ନନାକୁ ବରାତ କରି ଇଲିସି ମାଛ ଅଣେଇଛି ସେ । କୁକୁଡା ଯୋଗାଡ କରିଛି ଘର ପଛ ଆଡ ପଠାଣ ସାହିରୁ । ତା' ଶୋଇବା ଘରେ ରାନ୍ଧୁଛି କୁକୁଡା । ନାନୀ ଭଜିମା ମାଛ । ବୋଉ ପଲଉ ବସେଇଛନ୍ତି ହାଣ୍ଡିଶାଳରେ । ନନା ଯାଇଛି ରାଣୀହାଟ । କଉ ଗୋଟାଏ ଦୋକାନରେ ଭଲ ମିଠା ମିଳେ, ଆଣିବ । ବସ୍ତୁତଃ, ଘରସାରା ସମସ୍ତଙ୍କୁ ବ୍ୟସ୍ତ କରୁଛି ସେ । ଅବଶୋଷର କଥା, ହୃଷୀକେଶ ନାହାନ୍ତି । ତାଙ୍କୁ ତାଙ୍କ ବଡ଼ ସାହେବ ଜରୁରୀ କାମରେ ପଠେଇଛନ୍ତି, କେନ୍ଦ୍ରାପଡ଼ା । ସେ କାଲି ଫେରିବେ ।

ଚିରରଞ୍ଜନ ଫେରିଲା ତିନ୍ତି ତିନ୍ତି । ''ଆରେ ଚୁନି ନେ । ତୋ ଚୌଧୁରୀଙ୍କର ଜୟ ହଉ । ନାକେଦମ ହେଲିଣି ମୁଁ । ''

''ସେ କ'ଣ ଏକା ଖାଇବେ କି !'' ଖୁଣ୍ଟା ମାଇଲା ଇନ୍ଦିରା ।

''ନାରେ । ତୁ ରାଗୁଛୁ କାହିଁକି । ଆଉ କ'ଣ ଦରକାର କହ । ''

''ନନା ? ''

''କ'ଣ ?''

''ତୁମେ ତ ଭଲ ମାଂସ ରାନ୍ଧ ?''

''ଏଁ, ହଁ । ମୋଟାମୋଟି ଉପରେ ...''

'' ତୁମେ ଟିକିଏ ଦେଖିବ । ଏଠି ରୋଷ୍ଟ ବସେଇଛି ମୁଁ । ଟିକିଏ ବାହାରକୁ ଯିବି, ଦଶ ମିନିଟ । ତୁମେ ଦେଖିବ, ତରକାରୀଟା ଲାଗି ନ ଯାଏ ଯିମିତି । ଯଦି ହୋଇଯାଏ, ଓହ୍ଲେଇ ଦବ । '' ଢ଼ଙ୍କା କାଢ଼ିଲା ଇନ୍ଦିରା ଡେକ୍‌ଚିରୁ । ଘର ମହକି ଉଠିଲା ବାସ୍ନାରେ ।

''ବାଃ, ବଢ଼ିଆ ବାସ୍ନା ହୋଇଚିରେ ଚୁନି । ତୁ ଯା, ମୁଁ ଦେଖୁଛି । ''

ବସି ପଡ଼ିଲା ଚିରରଞ୍ଜନ ସେଠି, ପିଠା ଖଡ଼ିକା ଧରି । ତରତର ହୋଇ ଲୁଗା ବଦଳେଇ ନେଲା ଇନ୍ଦିରା । ଆରସି ପାଖରେ ଦଶ ସେକେଣ୍ଡ ଠିଆ ହୋଇ ମୁଣ୍ଡର ବାଳକୁ ଠିକ୍ କରିନେଲା । ବାହାରି ଆସିଲା ଘରୁ । ଡାକିଲା, 'ମନୁ' ?

ମନୁ ଆସି ଠିଆ ହେଲା ।

''ବୋଉ, ମୁଁ ଟିକିଏ ଆସୁଛି । ଚାଲ ମନୁ । ''

ଦୁଇ ମିନିଟର ରାସ୍ତା । ଚୌଧୁରୀ କୋଠିର ଫାଟକ ଖୋଲିଲାବେଳେ ଦେଖିଲା ଇନ୍ଦିରା, ଦୋତାଲାରେ ଆଲୁଅ ଜଳୁଛି । ଫେରିଲେଣି ବୋଧହୁଏ ।

ଆଗେଇ ଗଲା ସେ । ସନିଆ ତଳେ ଥିଲା । ନମସ୍କାର କଲା ।

''ବାବୁ ଆସିଲେଣି ?''

'' ହଁ, ଏଇ ଅଇଲେ । ତିନ୍ତି ଯାଇଛନ୍ତି ଯେ ଲୁଗା ପାଲଟୁଛନ୍ତି । ''

''ଉପରକୁ ବାଟ କୁଆଡେ ? '' ଇନ୍ଦିରା ପଚାରିଲା ।

''ଏଇ ବାଟେ ଆସନ୍ତୁ । '' ସନିଆ ସିଡ଼ି ଦେଖେଇଦେଲା ।

''ତୁମେ ଆମ ଘରେ ଖାଇବ ରାତିରେ ? ''

''ଆଜ୍ଞା । ''

ଚଟି ଫଟର ଫଟର କରି ସିଡ଼ି ଚଢ଼ିଲା ଇନ୍ଦିରା । ପଛରେ ମନୁ । ଉପରକୁ ଉଠି ଦେଖେ, ସତ୍ୟବ୍ରତ ଦୁଆର ମୁହଁରେ ଠିଆ ହୋଇଛି । ପିନ୍ଧିଛି ଧୋତି ଉପରେ ସିଲ୍‌କର ପଞ୍ଜାବି । ମୁହଁରେ ସିଗ୍ରେଟ । ବୋତାମ ଲଗଉଛି ଛାତିରେ । ଆଲୁଅରେ ଟିକ୍ ଟିକ୍ କରୁଛି ପଥରଗୁଡା ।

''ଆସନ୍ତୁ ଇନ୍ଦିରା ଦେବୀ'' ଆହ୍ୱାନ ଜଣେଇଲା ସତ୍ୟବ୍ରତ । ''ଏ'ଟି କିଏ ?''

''ମୋ ସାନଭାଇ ମନୁ ।''

ମନୁ ନମସ୍କାର କଲା ।

''ଆସନ୍ତୁ ଭିତରକୁ, '' ସତ୍ୟବ୍ରତ ନେଇଗଲା ସେମାନଙ୍କୁ ବସିବା ଘରକୁ । ଗୋଟାଏ ବିରାଟ ଗାଲିଚା ବିଛା ହୋଇଛି । ପୁରୁଣା ହୋଇଗଲାଣି, କିନ୍ତୁ ଦାମି ଜିନିଷ । ଘର ସାରା ପଡ଼ିଛି ନାନା ପ୍ରକାର ଆସବାବ । କାନ୍ଥ ରଙ୍ଗ ହୋଇଛି । ସେଥିରେ ଝୁଲୁଛି ବିରାଟ ବିରାଟ ତୈଳ ଚିତ୍ର ।

ମନୁ ଅନେଇଥାଏ ସତ୍ୟବ୍ରତ ଆଡ଼କୁ । କି ସୁପୁରୁଷ ଏ ଲୋକଟା । ସେ ବିଶ୍ୱାସ କଲାନି, ଏ ଓଡ଼ିଆ ବୋଲି । ଦୁର୍ଦ୍ଦାନ୍ତ ଚେହେରା ଲୋକଟାର । ଖୁବ୍ ଗୋରା, ମୁଣ୍ଡର ବାଳଗୁଡା ଚିକ୍‌କଣ କଳା । କପାଳଟା ଚଉଡା, ନାକଟା ଲମ୍ୱା, ସୁନ୍ଦର । ପାଟିଟା ଛୋଟ । ଓଠଗୁଡା ପତଳା । ଛାତିଟା ବେଶ୍ ଚଉଡା, ହାତ ଗୁଡାକ ଅସ୍ୱାଭାବିକ ଲମ୍ୱା ।

''ବସନ୍ତୁ ।'' ସତ୍ୟବ୍ରତ ଡାକିଲା ।

'' ଯିବେ ଯେ ? ଡେରି ହୋଇଗଲାଣି ।'' ଇନ୍ଦିରା ମନେ ପକେଇ ଦେଲା ।

''ଭାରି ଦୁଃଖିତ ଇନ୍ଦିରା ଦେବୀ, କିନ୍ତୁ '' ଘଡ଼ି ଦେଖିଲା ସତ୍ୟବ୍ରତ ''ମୋଟେ ସାଢ଼େ ସାତଟା । ମୁଁ ସନିଆକୁ କହିଛି । ସେ ଚା ଆଣୁଛି । ଖାଇବା, ଯିବା ।''

ବସିଲା ଇନ୍ଦିରା । ମନୁ ବସିଲା ତା ପାଖରେ । ସତ୍ୟବ୍ରତ ଠିଆ ହୋଇଥାଏ ।

''ଆପଣ କୁଆଡେ ଯାଇଥିଲେ ?'' ପଚାରିଲା ଇନ୍ଦିରା ।

'' ଓ, ସେ କଥା କୁହନ୍ତୁନି । ଯାଇଥିଲି ଜଣେ ବନ୍ଧୁ ଘରକୁ । ଫେରୁ ଫେରୁ ବର୍ଷାରେ ଭିଜିଗଲି । ଗାଡି ତ ନାହିଁ ।''

''ରିକ୍‌ସାରେ ଆସିଲେ ନାହିଁ ?''

''ସେତକ ପାରେନି । ଗୋଟାଏ ଲୋକ ମୋତେ ଟାଣି ଟାଣି ନବ, ଏଇ ବିରାଟ ଶରୀରଟାକୁ । ମୋର ଦୟା ହୁଏ । ତା ଠଉଁ ଶଗଡ଼ ଚଢ଼ିବା ଭଲ ।'' ନିଜର ରସିକତାରେ ହସିଲା ସତ୍ୟବ୍ରତ, ବସିଲା ।

''ଏମାନେ କିଏ ?'' ପଚାରିଲା ଇନ୍ଦିରା ଛବିଗୁଡାକୁ ଦେଖେଇ ।

''ମୋର ପିତୃପୁରୁଷ ।''

''ଆପଣଙ୍କ ସ୍ତ୍ରୀଙ୍କ ଛବି ଅଛି ଏଠି ?''

''ଅଛି ।''

''ଦେଖିପାରେ ?''

''ହଁ, ସାନନ୍ଦରେ । କିନ୍ତୁ ଆଜି ଥାଉ । ଆଜି — ଆପଣଙ୍କର ଦିନ ।''

କଥାଟାର ଗୂଢ଼ ଅର୍ଥ ବୁଝିଲା ଇନ୍ଦିରା । ଚୁପ୍ କରିଗଲା । ମନେ ମନେ ଖୁସି ହେଲା । ସନିଆ ଟ୍ରେ ଆଣିଲା । ଇନ୍ଦିରା ଚା କରିଦେଲା । ଦି'ଜଣ ଖାଇଲେ । ଇନ୍ଦିରା ଦେଖୁଥାଏ

ସତ୍ୟବ୍ରତଙ୍କୁ । ସତ୍ୟବ୍ରତ ଅନେଇଲା ତାକୁ । ଆଖିରେ ଆଖି ପଡ଼ିବାରୁ ଟିକିଏ ଲଜ୍ଜିତ ହୋଇ ଇନ୍ଦିରା କହିଲା, ''ମୋତେ ତ ସେ ଭାଷା ଆସେନି । ନ ହେଲେ କହନ୍ତି । ହଜୁର ଉଠନ୍ତୁ ।''

ଠିଆ ହେଲା ସତ୍ୟବ୍ରତ । ''ହଁ, ଜମିଦାର ଏଥର ବିଜେ କରିବେ । ''

ହସିଲେ ଦି'ଜଣ । ସନିଆ ଆସି ଯୋତା ବଦଳେଇ ଦେଇ, ଟ୍ରେ ନେଇ ଚାଲି ଯାଉଥିଲା ।

''ସନିଆ ଯିବ ଆମ ଘରକୁ । ''

''ହଁ, ସେ କାମ ସାରି ଆସିବ । କିରେ ଘର ଦେଖିଛୁ ?''

''ହଁ ଏଇଠିତ, ଗଳି ମୁଣ୍ଡରେ । ''

ସତ୍ୟବ୍ରତ, ଇନ୍ଦିରା ଓ ମନୁ ଓହ୍ଲେଇ ଗଲେ ।

ମହା ଆନନ୍ଦରେ ଖିଆପିଆ ସରିଲା । ସତ୍ୟବ୍ରତ ସଙ୍ଗରେ ଖାଇ ବସିଲେ ଚିତ୍ତରଞ୍ଜନ ଓ ମନୁ । ଇନ୍ଦିରା କିଛିରେ ରାଜି ହେଲାନି ଏମାନଙ୍କ ସାଙ୍ଗରେ ବସିବାକୁ । ସେ ନାନୀ ସାଙ୍ଗରେ ବସିବ । ଇନ୍ଦିରାର ମାତା ସତ୍ୟବ୍ରତ ପାଖରେ ବସି ରହି ଖୋଇଲେ ତାକୁ । ସତ୍ୟବ୍ରତର ମନେ ପଡ଼ିଲା ତା ବୋଉଙ୍କୁ । ଇମିତି ବୋଉ ତାର ଜିଦ୍ କରି ଖୋଉଥିଲେ । ବରାବର ବାହାରେ ଥାଏ ପୁଅ, ଖାଇବାକୁ ପାଏନି । ବାପାଙ୍କ ଉପରେ ତାର ସବୁବେଳେ ରାଗ, ପୁଅକୁ ବାହାରେ ରଖି ପଢ଼ାନ୍ତି ବୋଲି । ରାଜକିଶୋର ଚୌଧୁରୀ ବରାବର ପୁଅ ସାଙ୍ଗରେ ଚାକର ପୂଝାରି ଦଉଥିଲେ । କଟକରେ ପଢୁଥିବା ବେଳେ ଅସୁବିଧା କିଛି ନ ଥିଲା । ବୋଉ ଆସି ରହୁଥିଲେ । ନ ହେଲେ ବାପା ରହୁଥିଲେ ।

ଖାଇ ସାରି ଢ଼କ୍କାର ତୋଳି ଉଠିଲା ସତ୍ୟବ୍ରତ ଆସନ ଛାଡ଼ି । ଇନ୍ଦିରା ଆଗେଇ ଆସି ପାଣି ଢ଼ାଳିଲା ହାତରେ । ସାବୁନ ଦେଲା ହାତ ଧୋଇବାକୁ । ହାତ ଧୋଉ ଧୋଉ ସତ୍ୟବ୍ରତ ପଚାରିଲେ, ''ଡାକ୍ତର ଘରେ ଖାଇ ବଦହଜମ ହେଲେ କଣ କରାଯାଏ ଇନ୍ଦିରା ଦେବୀ ?''

''ଔଷଧ ଖିଆଯାଏ । ''

''ମୋ ପାଖରେ ତ କିଛି ଔଷଧ ନାହିଁ । ''

'' ଡାକ୍ତରଙ୍କୁ ଖବର ଦେଲେ ଔଷଧ ପହଞ୍ଚିବ । ''

''ଧନ୍ୟବାଦ । ''

ତଉଲିଆରେ ହାତ ପୋଛି ଦାଣ୍ଡ ଘରକୁ ଗୋଡ ବଢ଼େଇଲା ସତ୍ୟବ୍ରତ ।

''ନା ନା, ସେ ଘରକୁ ନୁହେଁ । ଏ ଘରକୁ ଆସନ୍ତୁ । '' ମନୁ ଡାକି ନେଇଗଲା ତାକୁ ଆଉ ଗୋଟିଏ ଘରକୁ । ସତ୍ୟବ୍ରତ ଦେଖିଲା ଛୋଟ କୋଠରୀଟିଏ । ପଲଙ୍କ ଉପରେ ପରିଷ୍କାର ଧଳା ବିଛଣା, ତକିଆ । କାଚ ଆଲମାରୀରେ ମୋଟା ମୋଟା ଡାକ୍ତରୀ ବହି । ଟେବୁଲରେ ସଜା ହୋଇଛି ଖାତାପତ୍ର, କଲମ ପେନ୍‌ସିଲ୍ । ଆଲଣାରୁ ଝୁଲୁଛି ଷ୍ଟେଥେସକୋପ୍ , ଏପ୍ରନ, ଶାଢ଼ୀ । ଗୋଟିଏ ଫଟୋଗ୍ରାଫ୍ ଟଙ୍ଗା ହୋଇଛି ଆଲୁଅ ତଳେ ।

ଇନ୍ଦିରା, କନଭୋକେଶନ ପୋଷାକରେ । ଦେଖିଲା ସେ ଛବିଟା ପାଖକୁ ଯାଇ ସତ୍ୟବ୍ରତ । ତା ପରେ ସିଗ୍ରେଟ ଲଗେଇ ଚୌକିରେ ବସିଲା ।

ଚିତ୍ତରଞ୍ଜନ ଆସିଲା । ହାତରେ ତାର ଥାଳିଆ । ପାନ, ଥଳେଇଚ, ସିଗ୍ରେଟ, ଦିଆସିଲି ସଜା ହୋଇଛି । ସତ୍ୟବ୍ରତ ପାନ ଗୋଟାଏ ନେଇ ପାଟିରେ ପୂରେଇ ଚୋବେଇଲା, ଗପ ଚାଲିଲା ଏଣୁ ତେଣୁ ନାନା-କଥାର । ଚିତ୍ତରଞ୍ଜନ କଣ କରେ, ମନୁ କଣ ପଢୁଛି । ନାନା କଥା । ରାଜନୀତି ବି ଆସିଲା ଆଲୋଚନାରେ ।

ଖାଇସାରି ପାନ ଚୋବେଇ ଚୋବେଇ ଆସିଲା ଇନ୍ଦିରା । କବାଟ ଧରି ଠିଆ ହେଲା ଦୁଆର ମୁହଁରେ । ''ଭୂରି ଭୋଜନ ତ ହେଲା, ଏଥର ଛୁଟି ମିଳୁ । '' ତାକୁ ଦେଖି କହିଲା ସତ୍ୟବ୍ରତ ।

''ହଁ, ଡେରି ହୋଇଗଲା ଟିକିଏ । ''

ଘଡ଼ି ଦେଖିଲା ସତ୍ୟବ୍ରତ, ''ନା ତ, ମୋଟେ ସାଢ଼େ ନ'ଟା । ''

ଉଠି ଠିଆ ହେଲା ସେ । ପିଣ୍ଡାକୁ ଆସିଲେ ସମସ୍ତେ । ଇନ୍ଦିରାର ମାତା ଓ ନାନୀଙ୍କୁ ଧନ୍ୟବାଦ ଜଣେଇ ବିଦାୟ ନେଲା ସତ୍ୟବ୍ରତ । ଦାଣ୍ଡ ପିଣ୍ଡାରେ ପଚାରିଲା, ସନିଆକୁ ଦେଖୁନି ।

''ସେ ଖାଇସାରି ଗଲାଣି । ଆପଣଙ୍କ ଫେରିବା ପୂର୍ବରୁ ତାର ସେଠି ରହିବା ଦରକାର ।'' ଇନ୍ଦିରା ଉତ୍ତର ଦେଲା ।

''ଆପଣଙ୍କ ଦୃଷ୍ଟି ଚାରିଆଡେ ଇନ୍ଦିରା ଦେବୀ । '' ତଳକୁ ଓହ୍ଲେଇଲା ସତ୍ୟବ୍ରତ । ଇନ୍ଦିରା ତାକୁ ଆଗେଇ ଦବାକୁ ଓହ୍ଲେଇଲାରୁ କହିଲା —

'' ଆଉ ଆପଣ କାହିଁକି କଷ୍ଟ କରୁଛନ୍ତି ? ସୁଝି ତ ଦେଲେ ସୁଧ ସହିତ । ମୁଁ ଚାଲିଲି । ଗୁଡ୍ ନାଇଟ୍ । ''

## ଦଶ

ସକାଳୁ ଖବର ଆଣିଲା ସନିଆ, କାଲି ରାତିରୁ ସତ୍ୟବ୍ରତକୁ ଜର । ସେ ଶୋଇଛି । ଉଦ୍‌ବିଗ୍ନ ହୋଇ ଉଠିଲା ଇନ୍ଦିରା । କ'ଣ ହେଲା ? ବୋଉକୁ କହି ଷ୍ଟେଥେସ୍‌କୋପ୍, ଥର୍ମୋମିଟାର ଆଦି ଧରି ଯାଇ ପହଞ୍ଚିଲା ଚୌଧୁରୀ କୋଠିରେ । ସନିଆ ତାକୁ ନେଇଗଲା ଉପରକୁ । ସତ୍ୟବ୍ରତର ଶୋଇବା ଘରକୁ ।

ଘରେ ପଶି ଦେଖିଲା ଇନ୍ଦିରା — ସତ୍ୟବ୍ରତ ଗୋଟାଏ ଶାଲ୍ ଘୋଡି ହୋଇ ଶୋଇଛି । ନିଃଶବ୍ଦରେ ଯାଇ ତା ମୁହଁକୁ ଅନେଇଲା । କପାଳରେ ହାତ ଦେଲାରୁ ଆଖି ଖୋଲିଲା । ସତ୍ୟବ୍ରତ ହସିଲା । ''ଇନ୍ଦିରା ଦେବୀ, ଆସିଛନ୍ତି ଆପଣ ? ଧନ୍ୟବାଦ । ''

''କଣ ହେଲା, ଜର କାହିଁକି ହେଲା ?''

''ସେ କଥା ତ ଆପଣ କହିବେ ।''

ଇନ୍ଦିରା ତାର ଛାତି ପରୀକ୍ଷା କଲା, ନାଡି ଦେଖିଲା । ତାପରେ କହିଲା, "ଥଣ୍ଡା ଲାଗି ଜର ହୋଇଛି ।"

"ହଁ, କାଲି ଖୁବ୍ ଭିଜିଛି ବର୍ଷାରେ ।"

ସତ୍ୟବ୍ରତଠୁ ବୁଝିଲା ତାର ପେଟର ଅବସ୍ଥା । ତା ଛାତି ପାଖରେ ବସିପଡ଼ି କହିଲା, "ମୁଁ ଓଷଧ ପଠେଇ ଦଉଛି ମନୁ ହାତରେ । ଆପଣ କିନ୍ତୁ ଖାଇବେ କଣ ? କିଛି ନ ଖାଇବା ଭଲ । ହଜମ ହୋଇନି । ଇଲିସି ମାଛ ବଡ଼ ଗୋଳମାଳ କରେ ହଜମର ।"

"ଚା ଟିକିଏ ଖାଇପାରେ ?" ପଚାରିଲା ସତ୍ୟବ୍ରତ ।

"ହଁ,ଖା'ନ୍ତୁ ।"

"ସକାଳୁ ସନିଆ ଦେଇନି ମୋତେ । କହିଲା, ଡାକ୍ତର ସାନ୍ତାଣୀଙ୍କୁ ପଚାରି ସାରିଲେ ଯାଇ.. । ତା ପରେ ତ ଆପଣ ଆସିଲେ ।"

ଇନ୍ଦିରା ସନିଆକୁ ଡାକି ଚା ଆଣିବାକୁ କହିଲା । ତା ପରେ କାନ୍ଥ କଡରେ ଥିବା ଚଉକିରେ ବସିବାକୁ ଗଲାରୁ ସତ୍ୟବ୍ରତ ଅନୁଯୋଗ କଲା, "ନା ସେଠି ନୁହେଁ । ପାଖକୁ ଆସନ୍ତୁ ।"

ଚଉକି ଟାଣି ଆଣିଲା ଇନ୍ଦିରା ପଲଙ୍କ ପାଖକୁ । ସତ୍ୟବ୍ରତର ହାତ ଟେକି ନେଇ ପୁଣି ଥରେ ନାଡି ଦେଖିଲା । ତା ପରେ ହାତକୁ ଧୀରେ ରଖିଦେଲା ବିଛଣାରେ ।

"ନା ବିଶେଷ କିଛି ନୁହେଁ । ଜର ଛାଡ଼ିଯିବ । ମୁଁ ଓଷଧ ପଠେଇ ଦିଏ ।" ସେ ଉଠି ଠିଆ ହେଲା ।

"ଆପଣ ଯାଉଛନ୍ତି ନା କଣ ? ମୁଁ ଚା ଖାଇନି ।" ସତ୍ୟବ୍ରତର କଣ୍ଠରେ ହତାଶା ।

ବସି ପଡ଼ିଲା ପୁଣି ଇନ୍ଦିରା । "ଆଚ୍ଛା, ଆପଣ ଚା ଖାଇ ସାରିଲେ ମୁଁ ଯିବି ।"

ସିଗ୍ରେଟ ଲଗେଇଲା ସତ୍ୟବ୍ରତ, ଧୂଆଁ ଛାଡ଼ି କହିଲା, "କଣ ଜାଣନ୍ତି ଇନ୍ଦିରା ଦେବୀ । ମୁଁ ଭାରି ଏକା .. ।"

ମୁଣ୍ଡ ହଲେଇଲା ଇନ୍ଦିରା ।

"ବାପା ମା'ର ଗୋଟିଏ ପୁଅ ମୁଁ । ମୋର ଭଉଣୀଟିଏ ବି ନାହିଁ । ମୁଁ କଲେଜରେ ପଢୁଥାଏଁ, ବୋଉ ମରିଗଲା । ମୋର ସ୍ତ୍ରୀ, ହେମମାଳୀ ତା ନାଁ, ତାକୁ ବି ବେଶୀଦିନ ପାଇନି ମୋ ପାଖରେ । ଆମ ଘରକୁ ଆସିବାର ତିନି ବର୍ଷ ପରେ ସେ ମରିଗଲା । ମୁଁ ସେତେବେଳେ ପଢୁଥାଏଁ, ଏଲାହାବାଦରେ । ଛୁଟିରେ ଘରକୁ ଆସିଲେ ତା ସାଙ୍ଗରେ ଦେଖା ହୁଏ । ଏଇ ଯା ।"

ଇନ୍ଦିରା ବୁଝିଲା ସତ୍ୟବ୍ରତ ଚୌଧୁରୀର ଦୁଃଖ । କିମିତି ନରମ ହୋଇଗଲା ତା ମନ ।

ସତ୍ୟବ୍ରତ କହିଲା, "ଆପଣ ତାର ଛବି ଦେଖିବାକୁ ଖୋଜୁଥିଲେ । ଏଇ ସେଇଠି ତାର ଫଟୋଗ୍ରାଫ୍ ।"

ଉଠିଯାଇ ଦେଖିଲା ଇନ୍ଦିରା, ହେମମାଳୀର ଛବିକୁ । ସୁନ୍ଦରୀ ଥିଲା ନିଶ୍ଚୟ । ପ୍ରାୟ ବାଳିକାଟିଏ, ବୟସ ପନ୍ଦର ଷୋହଳ । ମୁହଁରେ ହସ । ଜମିଦାର ଘର ଝିଅ । ଜମିଦାର ବୋହୂ । ଗହଣା ପିନ୍ଧିଛି ଅନେକ ।

ଫେରି ଆସି ଚଉକିରେ ବସିଲା ।

ସତ୍ୟବ୍ରତ କଥାର ଖିଅ ଟାଣିଲା, ''ହେମ ଭାରି ଭଲ ପାଉଥିଲା ମୋତେ । ଛୁଟି ପରେ କଲେଜକୁ ଫେରିବା ଆଗଦିନ ରାତିରେ କାନ୍ଦି ଭସଉଥିଲା । ଭାରି ନରମ ଥିଲା ତା ମନ । ଦେହଟା ବି ଥିଲା ଡେଲିକେଟ । ଗୋଟିଏ ସନ୍ତାନ ରଖି ସେ ମରିଗଲା । ସେଇ ସନ୍ତାନଟି ମୋର ଏକମାତ୍ର ଆପଣାର । ତାକୁ ବି ମୁଁ ପାଖରେ ପାଏନି ।

''ସେ ଥାଏ ରାୟପୁରରେ — ତା ସ୍କୁଲରେ । ଆପଣ ଜମିଦାର ବୋଲି ଥଟ୍ଟା କରନ୍ତି ମୋତେ । କିନ୍ତୁ ଶୁଣିଲେ ତ ମୋ କଥା । କହନ୍ତୁ, କି ଦରକାର ଜମିଦାରୀର, ଯଦି ସ୍ତ୍ରୀ ସନ୍ତାନ ସମସ୍ତଙ୍କଠୁଁ ବିଚ୍ଛିନ୍ନ ହୋଇ ରହିବାକୁ ପଡେ । ମୁଁ ପଳାଏଁ ମୋ ପାଖରୁ । ମୋ ଭିତରେ ଯେଉଁ ଜମିଦାର ସତ୍ୟବ୍ରତ ଚୌଧୁରୀ ଅଛି, ତା ପାଖରୁ ପଳାଏଁ । ଶେଷରେ ଏବେ ଜଙ୍ଗଲରେ ଯାଇ ବସା ବାନ୍ଧିଛି ଚଷାର ଜୀବନ ଯାପନ କରି ସୁଖୀ ହେବି ବୋଲି । ହାୟରେ ଦୁରାଶା !'' ଦୁଇ ଆଖିରୁ ଲୁହ ବୋହିଗଲା ସତ୍ୟବ୍ରତର । ନିଜ ରୁମାଲରେ ସେଇ ଅଶ୍ରୁ ପୋଛିଦେଲା ଇନ୍ଦିରା । ସତ୍ୟବ୍ରତର ନାକରେ ବାଜିଲା ପୁଷ୍ପସାର । ମନେ ପଡ଼ିଗଲା ତାର, ''ଆପଣ ଗୋଟିଏ ରୁମାଲ ମୋ ଘରେ ଛାଡି ଆସିଛନ୍ତି । ମୁଁ ରଖିଛି । ପଠେଇଦେବି ସୁବିଧା କରି ।''

''କିଛି ଦରକାର ନାହିଁ ପଠେଇବାର ।''

ଚା ଆସିଲା । ଗୋଟାଏ ପିଆଲା ଚା କଲା ଇନ୍ଦିରା । ସତ୍ୟବ୍ରତକୁ ବସେଇ ଆସ୍ତେ ଆସ୍ତେ ପେଇଦେଲା । ଚା ପିଇସାରି ସତ୍ୟବ୍ରତ ପୁଣି ଶୋଇ ପଡ଼ିଲା ।

''ଆପଣ ଚା ଖାଇଲେ ନାହିଁ ଯେ ?''

''ଏଇ ନଉଛି ମୁଁ'' ପିଆଲାରେ ଚା ଢ଼ାଳି ଶୀଘ୍ର ଶୀଘ୍ର ପିଇଦେଲା ଇନ୍ଦିରା । ସନିଆ ଟ୍ରେ ନେଇ ଚାଲିଗଲା । ଇନ୍ଦିରା ଉଠିଲା ଏଥର । ''ସନିଆ ଥାଉ । ମୁଁ ଯାଇ ଶୀଘ୍ର ଔଷଧ ପଠେଇ ଦେବି । ପାନେ ଖାଇବେ । ପଥ୍ୟ ଯାହା ଦରକାର ମୁଁ ଆଣିବି । ଏଥର ମୁଁ ଯାଏଁ ।''

ସେ ବାହାରି ଆସିଲାବେଳେ ନଜର କଲା ସତ୍ୟବ୍ରତର ଆଖିର ଦୃଷ୍ଟିକୁ । କି କରୁଣ, କି ଅସହାୟ ! ଗୋଟାଏ କଷ୍ଟ ଅନୁଭବ କଲା ତା ଛାତି ଭିତରେ ଇନ୍ଦିରା । ଏଇ ବିରାଟ ମଣିଷଟା ଛାତିରେ ଏତିକି ଦୁଃଖ ସାଇତି ରଖିଛି !

ପ୍ରାୟ ଏଗାରଟା ବେଳକୁ ପଥ୍ୟ ନେଇ ଆସିଲା ଇନ୍ଦିରା । ଗୋଟାଏ ଫ୍ଲାସ୍କରେ କମଳା ରସ । ଘର ଭିତରକୁ ପଶି ଦେଖିଲା, ସତ୍ୟବ୍ରତ ସିମିତି ଶୋଇଛି । ଶାଲ୍‌ଟା ନାହିଁ ଦେହରେ । ବୁଝିଲା, ଜର ଛାଡି ଯାଇଛି । ତାକୁ ଦେଖି ସତ୍ୟବ୍ରତ ଖୁସି ହୋଇ କହିଲା, ''ଦେଖନ୍ତୁ ତ, କେତେ କଷ୍ଟ ଆପଣଙ୍କୁ ମୁଁ ନ ଦଉଛି ।''

ଇନ୍ଦିରା ଉତ୍ତର ନ ଦେଇ ଫ୍ଲାସ୍କଟା ପାଖ ଟେବୁଲରେ ରଖି ଆସି ତାର କପାଳ ପରୀକ୍ଷା କଲା । ନା, ଉତ୍ତାପ ନାହିଁ । ନାଡି ଦେଖିଲା ।

"ଜର ଆଉ ନାହିଁ । କିନ୍ତୁ ହଜମ ...?"

"ହୋଇନି । ଖଇରୀ ହିକ୍କୁଟି ଉଠିଥିଲା ଥରେ ।"

ଇନ୍ଦିରା ବେଗ୍ରୁ ଔଷଧ କାଢ଼ିଲା । ଗୋଟାଏ ବଟିକା ସତ୍ୟବ୍ରତକୁ ଦେଇ କହିଲା, "ଏଟା ଗିଳି ଦିଅନ୍ତୁ ।"

ଟେବୁଲ ଉପରୁ ପାଣି ଆଣି ପିଇବାକୁ ଦେଲା । ତା' ପରେ ଚଉକି ଟାଣି ନେଇ ବସି କହିଲା, "ଆଜି ଏ ବେଳା ଆପଣଙ୍କର ଉପବାସ । କମଳା ରସ ଆଣିଛି । ଦରକାର ହେଲେ ଅଳ୍ପ ଅଳ୍ପ ପିଇବେ । ଏଇକ୍ଷଣି ଦେବି ?"

"ଦିଅନ୍ତୁ ।"

କାଚ ଗିଲାସରେ କମଳା ରସ ଢ଼ାଳି ସତ୍ୟବ୍ରତକୁ ପେଇ, ତା ମୁହଁ ପୋଛିଦେଲା । ନିଜ ଚଉକିକୁ ଫେରି ଆସି ପଚାରିଲା, "ଭଲ ଲାଗୁଛି ?"

"ହଁ ।"

"ମୁଣ୍ଡବିନ୍ଧା ?"

"ନାହିଁ ।"

"ଏଥର ସବୁ ଭଲ ହୋଇଯିବ । ବେଶୀ ଉଠାବସା କରିବେ ନାହିଁ । ବିଶ୍ରାମ ଦରକାର । ଆପଣ ବହୁତ ଖଟନ୍ତି ।"

"ଚଷାର ଜୀବନରେ ଖଟଣି ଅନେକ ଯେ ଇନ୍ଦିରା ଦେବୀ !"

"ଆପଣଙ୍କ ରକମ ସଉଖୀନ ଚଷା, କାହିଁ ମୁଁ ତ କଉଠି ଦେଖିନାହିଁ ?"

"ସଉଖୀନ ?" ହସିଲା ସତ୍ୟବ୍ରତ, "ହଉ ହେଲା ।"

ସନିଆକୁ ଡାକିଲା ଇନ୍ଦିରା । ତାକୁ ଯାହା ନିର୍ଦ୍ଦେଶ ଦେବାର ଦେଲା । ତା'ପରେ ସତ୍ୟବ୍ରତକୁ କହିଲା, "ମୁଁ ଏଥର ଯାଏଁ ?"

"କେତେବେଳେ ଆସିବେ ପୁଣି ?" ସତ୍ୟବ୍ରତର ଉତ୍କଣ୍ଠ ଜିଜ୍ଞାସା ।

"ଆସିବି ? କେତେବେଳେ ? ସଂଧ୍ୟାବେଳକୁ ।"

"ନା । ତାର ଢ଼େର ଆଗରୁ ।"

ହସି ପକେଇଲା ଇନ୍ଦିରା । ପଲଙ୍କକୁ ଲାଗି ଠିଆ ହୋଇ ମିଠା ଗଳାରେ ପଚାରିଲା । "କେତେବେଳେ ଆସିଲେ ଆପଣ ଖୁସି ହେବେ ?"

ଘଡ଼ି ଦେଖିଲା ସତ୍ୟବ୍ରତ । ମନେ ମନେ ହିସାବ କରି କହିଲା, "ଦୁଇଟା ବେଳକୁ ।"

"ଆଚ୍ଛା ।"

ଦୁଇଟା ବେଳକୁ ଇନ୍ଦିରା ଆସିଲା ତା ବୋଉକୁ ନେଇ । ସନିଆ କହିଲା, "ବାବୁ ଦି ଥର ଖୋଜି ସାରିଲେଣି ।"

"ବାବୁ କ'ଣ କରୁଛନ୍ତି ? "

"ଶୋଇଛନ୍ତି ।"

ମା ଝିଅ ଉଠିଲେ ସିଡ଼ିରେ, ନିଃଶବ୍ଦରେ । ରୋଗୀର ଘର, ଅଯଥାରେ ଗୋଳମାଳ କରିବା ଠିକ୍ ନୁହେଁ । ସତ୍ୟବ୍ରତର ଶୋଇବା ଘର ଦୁଆର ମୁହଁରେ ଠିଆ ହୋଇ ପର୍ଦା ଟେକି ଦେଖିଲା ଇନ୍ଦିରା, ସେ ଆଖିବୁଜି ଶୋଇଛି । ମା' ଝିଅ ଘର ଭିତରକୁ ପଶିଲେ । ସତ୍ୟବ୍ରତ ଆଖି ଖୋଲି ଦେଖିଲା ଦି'ଜଣକୁ — ହସିଲା ।

"ଦେଖନ୍ତୁ ତ ଦୁର୍ଯୋଗ ମାଉସୀ, ଆପଣଙ୍କୁ ବି ଆସିବାକୁ ପଡ଼ିଲା !"

ତା ମୁଣ୍ଡରେ ହାତ ରଖିଲେ ମାଉସୀ , ଜର ନାହିଁ ।

"ନା ଜର ନାହିଁ । ଦେହ ବେଶ୍ ଭଲ ଲାଗୁଛି — ଇନ୍ଦିରା ଦେବୀ ଡାକ୍ତର । ରୋଗର ନ ପଳେଇ ଉପାୟ ଅଛି ? "

ଇନ୍ଦିରା ବସିଲା କାନ୍ଥ କଡ଼କୁ ଚୌକିରେ, ତା ବୋଉ ଠିଆ ହୋଇଥାନ୍ତି ସତ୍ୟବ୍ରତର ମୁଣ୍ଡ ପାଖରେ, ଦୁଇ ହାତରେ ତାର କେଶଗୁଚ୍ଛକୁ ସାଉଁଳେଇ ଦେଉଥାନ୍ତି । ତାର କପାଳ ଓ ଭ୍ରୁ ଉପରେ ଅଙ୍ଗୁଳି ଚାଳନା କରୁଥାନ୍ତି । ସତ୍ୟବ୍ରତ ଆରାମରେ ଆଖିବୁଜି ଶୋଇଥାଏ ।

"ଜାଣନ୍ତି ମାଉସୀ, ଇମିତି ମୁଁ ଖୁବ୍ ଟାଣୁଆ । ଦେହ ମୋର ବିଶେଷ ଖରାପ ହୁଏ ନାହିଁ । ମୁଁ ଖଟିପାରେ ଖୁବ୍, କିନ୍ତୁ ଦେହ ଖରାପ ହେଲେ ଭାରି ଅସହାୟ ଲାଗେ । କିମିତି ମନେ ହୁଏ, ମରିଯିବି ।"

ଜିଭ କାମୁଡ଼ି ପକେଇଲେ ମାଉସୀ । "ଭଗବାନ ! କି କଥା କହୁଛ ବାପା ତୁମେ ? ତୁମର ଶହେ ବର୍ଷ ଆୟୁ ହେଉ ।" ତା ମୁଣ୍ଡରେ ହାତ ରଖି ଆଶୀର୍ବାଦ କଲେ ଇନ୍ଦିରାର ବୋଉ ।

"ଖାଲି ଏଇ କମଳା ରସ ଖାଇବେ ନା ଆଉ କିଛି ଟିକିଏ ଖାଇବେ ଲୋ ଚୁନି ?" ପଚାରିଲେ ସେ ।

"ନା, ଏ ବେଳା ଖାଲି କମଳା ରସ ।" ଇନ୍ଦିରାର ଉତ୍ତର ।

"ରାତିରେ ?"

"ଗରମ ଦୁଧ । ଦୁଧର ବ୍ୟବସ୍ଥା ଅଛି ?" ସେ ପଚାରିଲା ସତ୍ୟବ୍ରତକୁ ।

" ନ ଥିଲେ ହବ ।" ସତ୍ୟବ୍ରତର ଜବାବ ।

"ନା । ମୁଁ ପଠେଇଦେବି ଦୁଧ ।" ଇନ୍ଦିରାର ବୋଉ କହିଲେ । "କିଣା ଦୁଧ ଖାଲି ପାଣି ।"

"ଦେଖିଲେ ଇନ୍ଦିରା ଦେବୀ । ମୋ ଭାଗ୍ୟ କିମିତି ? ମାଉସୀ ମୋ ଆଡେ ... ।"

"ହୁଁ," ଜବାବ ଦେଲା ଇନ୍ଦିରା, "ଖୁବ୍ ଯୋର ଭାଗ୍ୟ ଆପଣଙ୍କର । ମୋର ତ ହିଂସା ହୁଏ ।"

ମାଉସୀ ଗପିଲେ ତାଙ୍କ ପିଲାବେଳର କଥା । ବାସୁ ଚୌଧୁରୀଙ୍କ ଗପ, ସେ କିମିତି ଦଉଥିଲେ, ଖୁଆଉଥିଲେ । ତାଙ୍କ ଗାଁକୁ ଅତିଥି ଅଭ୍ୟାଗତ ଆସିଲେ କେହି ନିରାଶ ହୋଇ ଫେରୁ ନ ଥିଲେ । ଗାଁରେ ସ୍କୁଲ ବସେଇଥିଲେ । ଡାକ୍ତରଖାନା ଖୋଲିଥିଲେ । ସାହେବମାନେ ଆଗେ ଯାଉଥିଲେ ଚୌଧୁରୀ ଘରକୁ ଦଶହରା ବେଳେ, ଭାରି ନାଚ ତାମସା ହେଉଥିଲା । ଗାଁ ଲୋକେ ନବମୀ ଦିନ ଭୋଜି ଖାଉଥିଲେ,ଭାତ ମାଂସ ତରକାରୀ ।

ରାଜକିଶୋର ଚୌଧୁରୀଙ୍କ ବାହାଘର ଅଷ୍ଟମଙ୍ଗଳା ଯାକେ ଉତ୍ସବ ହୋଇଥିଲା ଚୌଧୁରୀ ଉଆସରେ । କେତେ ବାଣ ଫୁଟିଥିଲା । କଲିକତାରୁ ବାଜା ଆସିଥିଲା, କି ଆଲୁଅ ଝାଡ ସବୁ ! ଗାଁ'ଟା ତ ଉଠୁଥିଲା ପଡୁଥିଲା । ଯାତ୍ରା, ନାଟ, ଖିଆଦିଆ ସୀମା ନ ଥିଲା ।

ତା' ପରେ ବଡ଼ ଘଟଣା ସତ୍ୟବ୍ରତର ଜନ୍ମ । ସେଇ ବର୍ଷ ସେ ଭାର ନେଇ ଆସିଲେ — ବାସୁ ଚୌଧୁରୀ ବଞ୍ଚିଥାଆନ୍ତି । ନାତି ଦେଖି ସେ ମଲେ ।

''ସିମିତି ଆତସବାଜି ମୁଁ ଆଉ ଦେଖିନି, ରାତିସାରା ବାଣ ଫୁଟିଥିଲା । ଗଛ ତ ଫୁଟିଥିଲା ଶହେ ଗୋଟାଏ । ଉଆସ ଅଗଣାରେ ଢ଼ଳା ହୋଇଥିଲା, ଦଶ କଳସି ତେଲ । ଦଶକୁନ୍ଦା ଗୁଡ । ଏକୁଇଶିଆ ଦିନ ଦି' ହଜାର ଲୋକ ଖାଇଥିଲେ । ପାଞ୍ଚଶ ବ୍ରାହ୍ମଣଙ୍କୁ ଭୋଜନ କରେଇ ଟଙ୍କାଏ ଲେଖାଁ ଦକ୍ଷିଣା ଦେଇଥିଲେ ବାସୁ ଚୌଧୁରୀ । ଗରିବ ଦୁଃଖୀଙ୍କୁ ଲୁଗା ବାଣ୍ଟିଥିଲେ । ବ୍ରାହ୍ମଣମାନେ ତୁମକୁ ଶହେ ବର୍ଷ ପରମାୟୁ ଦେଇ ଯାଇଛନ୍ତି ବାପା ।''

ହସିଲା ସତ୍ୟବ୍ରତ ।

ତହିଁ ଆରଦିନ ଉପରଓଳି ସତ୍ୟବ୍ରତ ବାହାରିଲା ଅନୁଗୁଳ । ଇନ୍ଦିରାକୁ ଖବର ଦେଲା ସେ । ଯିବା ଆଗରୁ ଇନ୍ଦିରା ଆସିଲା ।

''ଆପଣ ମୋ ଉପରେ ରାଗିଛନ୍ତି ? ''

ଇନ୍ଦିରା ଆଶ୍ଚର୍ଯ୍ୟ ହେଲା ତା କଥା ଶୁଣି, '' କାହିଁ, ନା ତ । ମୁଁ କାହିଁକି ରାଗିବି ଆପଣଙ୍କ ଉପରେ ?''

''ତାହେଲେ ଆଜି ଆସିଲେନି କାହିଁକି ?''

''ଦରକାର ଥିଲା କିଛି ? ସନିଆ ତ ସକାଳୁ ଖବର ଦେଲା, ଆପଣ ସୁସ୍ଥ, ଖାଇବାକୁ ଖୋଜୁଛନ୍ତି । ରୋଗୀ ଭଲ ହୋଇଗଲେ କିଏ ଡାକ୍ତରକୁ ଡାକେ ?''ହସିଲା ଇନ୍ଦିରା ।

''ଫିସ୍ କ'ଣ ଶସ୍ତା । ''

''ବସନ୍ତୁ, ଆପଣଙ୍କ ସାଙ୍ଗରେ ପରାମର୍ଶ ଅଛି । ବିନା ପଇସାରେ ଡାକ୍ତର ମିଳିଲେ ରୋଗୀର .ଜର ବଢ଼େ — ଜାଣନ୍ତି ତ ?''

ଇନ୍ଦିରା ବସିଲା ।

'' ମୁଁ ଆଜି ଫାର୍ମକୁ ଫେରି ଯାଉଛି । ସନିଆ ଗାଡି ଚଳେଇବ । ମୁଁ ପାଖରେ ବସିବି । ''

''ବେଶ୍ । ଆପଣଙ୍କ ଦେହ ଭଲ ଅଛି ତ , ଯିବେ । କିନ୍ତୁ ସାବଧାନରେ ରହିବେ । ଥଣ୍ଡା ପୁଣି ଲାଗିପାରେ । ''

''ଆପଣଙ୍କ ନିର୍ଦ୍ଦେଶ ପାଳିତ ହବ । ଆଉ କିଛି ହୁକୁମ ...?''

ହସିଲା ଇନ୍ଦିରା । ''ନା । କିମିତି ଅଛନ୍ତି ଖବର ଦେବେ । ''

''ଦେବି । ''

''କେତେବେଳେ ବାହାରିବେ ?''

''ଏଇଖିଣି । ତିନିଟା ବାଜିଛି, ସଂଧ୍ୟା ଆଗରୁ ପହଞ୍ଚି ଯିବା । ''

ଉଠି ଠିଆହେଲା ଇନ୍ଦିରା । ତାର ହାତ ଦି'ଟାକୁ ଦୁଇ ହାତ ବଢ଼େଇ ଧରିଲା ସତ୍ୟବ୍ରତ । ହସିଲା ତା ମୁହଁକୁ ଚାହିଁ । କହିଲା, ''ମଣିଷର ଆଶାର ସୀମା ନାହିଁ, ସେଥିଲାଗି ସେ ବଞ୍ଚି ରହେ । ''

ଇନ୍ଦିରା ନୀରବରେ ତା ମୁହଁକୁ ଚାହିଁଲା ।

''କୌଣସି ଦାବୀ ମୋର କଉଠି ନାହିଁ । ତଥାପି ମୁଁ ଏଥର ଆପଣଙ୍କଠୁଁ ଯା ପାଇଲି, ତାର ତୁଳନା ନାହିଁ, ଆପଣ ମୋ ଆଖିରେ ଅତୁଳନୀୟା । ''

ଏତିକି କହି ଚାରିଟାଯାକ ହାତକୁ ଏକାଠି କରି କହିଲା ସତ୍ୟବ୍ରତ, ''ମୋତେ ଅନୁମତି ଦିଅନ୍ତୁ, ମୁଁ ଯାଏଁ । ''

ମୁଣ୍ଡ ହଲେଇ ସମ୍ମତି ଦେଲା ଇନ୍ଦିରା । ତା'ର ହାତ ଦି'ଟାକୁ ଆସ୍ତେ ଆସ୍ତେ ଛାଡ଼ିଦେଲା ସତ୍ୟବ୍ରତ । ବାକ୍ୟ ବ୍ୟୟ ନ କରି ଘରଛାଡି ଚାଲିଗଲା ।

ଦୋତାଲାରୁ ଇନ୍ଦିରା ଦେଖିଲା, ସତ୍ୟବ୍ରତକୁ ବସେଇ ସନିଆ ଗାଡି ନେଇ ବାହାରିଗଲା ।

## ଏଗାର

ଦେବୀ ପକ୍ଷର ସପ୍ତମୀ । କଟକର ହାଓଆରେ ଆସନ୍ନ ଉତ୍ସବ ଦିନ ଗୁଡ଼ିକର ଆନନ୍ଦମୟ ସଙ୍କେତ । ସାହିରେ ମେଢ଼, କେଉଁଠି ଦେବୀ ମହିଷମର୍ଦ୍ଦିନୀ କେଉଁଠି ବା ଲାସ୍ୟମୟୀ ହରପ୍ରିୟା । ମହାଦେବ ବନିଛନ୍ତି କେତେ ଜାଗାରେ, କେଉଁଠି ରାସଲୀଳା, ବସ୍ତ୍ରହରଣ । ଚାରିଆଡେ ତେଲିଙ୍ଗି ବାଜା ବାଜୁଛି । କାଲି ଷଷ୍ଠୀରେ ବେଲ ବରଣ ସରିଛି । ଆଜି ପୂଜା ।

ସକାଳୁ ଇନ୍ଦିରା ବୁଲି ଯାଇଥିଲା ସାଙ୍ଗ ଘରକୁ । ଫେରିଲାବେଳେ ଦେଖିଲା ଚୌଧୁରୀ ଘର ଆଗରେ ସେଇ ଲେଣ୍ଡରୋଭାର ଥୁଆ ହୋଇଛି । ଉପରକୁ ଅନେଇ ଦେଖିଲା, ଗୋଟିଏ ଅତି ସୁନ୍ଦର ବାଳକ ଠିଆ ହୋଇଛି ବାରନ୍ଦାରେ, କ'ଣ ଗୋଟାଏ ଧରିଛି ହାତରେ, କେମେରା । ଆଖି ପାଖକୁ ଆଣି ଘର ସାମନାରେ ତିଆରି ହୋଇଥିବା ମେଢ଼ର ଛବି ନଉଛି । ସତ୍ୟବ୍ରତକୁ ଦେଖିଲା — ନାହିଁ ସେଠି, ଏଇ ତାହେଲେ ସୁବ୍ରତ, ପୁଣି ଥରେ ଅନେଇଲା

ସେ । ଆଠବର୍ଷର ବାଳକ — ବାପପରି ଗୋରା — ସିମିତି ବଡ଼ ବଡ଼ ଆଖି, ଦୀର୍ଘ ପକ୍ଷ୍ମ । ଧଳା ଶାର୍ଟରୁ ଗୋଟିଏ ଲାଲ ରଙ୍ଗର ଟାଇ ଝୁଲୁଛି ଛାତିରେ, ଚୌଧୁରୀ ଘର ଫାଟକ ପାଖରେ ସନିଆ ତାକୁ ଦେଖି ନମସ୍କାର କରି ଆଗେଇ ଆସିଲା । ଇନ୍ଦିରା ସନିଆକୁ ଇଙ୍ଗିତ କଲା, ଆହୁରି ଆଗକୁ ଆ । ସନିଆ ଆସିଲା ତା ପଛେ । ଗୋଟାଏ ତରାଟ ଗଛ ମୂଳରେ ଠିଆ ହେଲା ଇନ୍ଦିରା । ଚୌଧୁରୀ ଘରୁ କାହାରି ଦୃଷ୍ଟି ପଡ଼ିବନି ଏଠିକି । ସନିଆକୁ ପଚାରିଲା, ''ବାବୁ ଆସିଛନ୍ତି ?''

''ଆଜ୍ଞା ହଁ ।''

''କେବେ ଆସିଲେ ?''

''କାଲି ରାତିରେ । ଆଜି ସକାଳରୁ ସାନବାବୁ ଅଉଲେ ଯେ ଟେସନ ଯାଇଥିଲୁ ତାଙ୍କୁ ଆଣିବାକୁ । ଏଇ ଘଣ୍ଟାଏ ହବ ଫେରିଛୁ ।''

''ବାବୁ ଅଛନ୍ତି ?''

''ଆଜ୍ଞା ହଁ । ଗାଧୋଉଥିଲେ ।''

''ଆଚ୍ଛା ତୁମେ ଯାଅ । ବାବୁ ଖୋଜିବେ ପୁଣି ।''

''ଆପଣ ଆସିବେ ନାହିଁ ?''

''ନା ନା, ପରେ ।''

ଇନ୍ଦିରା ତରବର ହୋଇ ଆଗେଇଗଲା ତାଙ୍କ ଘର ଆଡକୁ ।

ଦି'ପହରବେଳେ ଖାଇବା ଟେବୁଲରେ ସନିଆ ଖବରଦେଲା, ''ଆଜ୍ଞା, ଡାକ୍ତରୀ ସାନ୍ତାଣୀ ଆସିଥିଲେ ।''

''କାହିଁ ? କେତେବେଳେ ?'' ପଚାରିଲେ ସତ୍ୟବ୍ରତ ।

''କୋଠିକି ଆସି ନାହାନ୍ତି । ଦାଣ୍ଡରେ, ସଡକରେ ଦେଖା ହୋଇଥିଲା ।''

ସତ୍ୟବ୍ରତ ଆଉ କିଛି ପଚାରିଲା ନାହିଁ । କ'ଣ ବା ପଚାରିବାର ଅଛି । ସୁବିଧା କରି ଦେଖା କରିବ ସେ । ସେ ତ ଅଛି ଆହୁରି ଚାରି ପାଞ୍ଚଦିନ । ସୁବ୍ରତର ଗୋଟାଏ ଦାନ୍ତ ଖରାପ ହୋଇଛି, ଡେନ୍‌ଟିଷ୍ଟ ପାଖକୁ ଯିବାକୁ ହେବ । ଅବନୀ ସାଙ୍ଗରେ ଢ଼େର ଦିନ ଦେଖା ହୋଇନି । ତା ଘରକୁ ଯିବ । ତାର କିଛି ରାସାୟନିକ ସାର ଦରକାର, ସଂପୃକ୍ତ କର୍ମଚାରୀଙ୍କ ସାଙ୍ଗରେ ଦେଖା କରିବାକୁ ହେବ । ଆହୁରି ଅନେକ କାମ ଅଛି । ଖୁସି ଗପ କରି ବାପ ପୁଅ ଖାଇନେଲେ ।

ସତ୍ୟବ୍ରତ ଲକ୍ଷ୍ୟ କଲା, ଚାରିଟା ସୁଦ୍ଧା ଇନ୍ଦିରା ଘରୁ କେହି ଆସିଲେ ନାହିଁ, କିମ୍ବା କିଛି ଖବର ନାହିଁ । ଇତି ମଧ୍ୟରେ ଇନ୍ଦିରାର ରୁମାଲଟା, ଯାହାକୁ ସୁବ୍ରତ ଉଦ୍ୟାନରେ ଛାଡ଼ିଦେଇ ଆସିଥିଲା, ତାକୁ ଡାକରେ ଇନ୍ଦିରା ପାଖକୁ ପଠେଇ ଦେଇଥିଲା । ଇନ୍ଦିରା ପ୍ରାପ୍ତି ସ୍ୱୀକାର କରି ଲେଖିଥିଲା । 'ମିଷ୍ଟାର ଚୌଧୁରୀ, ରୁମାଲ ପାଇଲି । ଗୋଟାଏ ଅନାବଶ୍ୟକ ଜିନିଷ ଉପରେ ଆପଣ ଏତେ ପ୍ରାଧାନ୍ୟ ଦେଇଛନ୍ତି, ସେଥିଲାଗି ଧନ୍ୟବାଦ ଜଣଉଛି ।''

ଚିଠି ପାଇବା ପରେ ସତ୍ୟବ୍ରତ ତା'ର ଭୁଲ ବୁଝି ପାରିଲା । ଅବଶୋଷ କଲା । କିନ୍ତୁ ଚୁପ୍ କରି ରହିଲା । ମନେ ମନେ ଠିକ୍ କଲା, ପୁଣି ଇନ୍ଦିରା ସାଙ୍ଗରେ ଦେଖା ହେଲେ ସବୁ ବୁଝେଇ ଦବ । ସେ ସୁଯୋଗ ମିଳି ନ ଥିଲା ତାକୁ । ସେ ଠିକ୍ କଲା , ସୁବ୍ରତକୁ ନେଇ ସେ ଇନ୍ଦିରା ପାଖକୁ ଯିବ । ସନିଆକୁ ପଠେଇଲା ଇନ୍ଦିରା ଘରକୁ । "ଯା, ଦେଖି ଆସିବୁ ସେ ଅଛନ୍ତି କି ନାହିଁ । ଯଦି ଅଛନ୍ତି କହିବୁ, ଆମେ ତାଙ୍କ ଘରକୁ ଯିବୁ ।" ସନିଆ ତ ଖୋଜୁଥିଲା । ସେ ସାଙ୍ଗେ ସାଙ୍ଗେ ଦଉଡ଼ିଲା ଇନ୍ଦିରା ଘରକୁ । ଇନ୍ଦିରା ଘରେ ଥିଲା । ତାକୁ ଖବର ଦେଲା ।

ଇନ୍ଦିରା ବ୍ୟତିବ୍ୟସ୍ତ ହୋଇ ଉଠିଲା । ତରତରରେ ତା'ରି ଶୋଇବା ଘରଟାକୁ ଝାଡି ଝୁଡି ସଫା କରିଦେଲା ଆଉ ଥରେ । ଆଲଣାରୁ ଶାଢ଼ି, ବ୍ଲାଉସ୍ ଟାଣି ନେଇ ପିଣ୍ଡାକୁ ଆସି ଡାକିଲା, "ବୋଉ ?" ତା ମା ଘରେ ଥିଲେ । ପଚାରିଲେ, "କଣ କିଲୋ ?"

ଘର ଭିତରକୁ ପଶିଯାଇ ଆଲଣାରେ ତା ଲୁଗାପଟାକୁ ଅଟ୍ଟାଡ଼ି ଦେଇ, ତା ବୋଉ ପାଖରେ ବସି ପଡ଼ି କହିଲା, "ଚୌଧୁରୀ ଆସିଛନ୍ତି । ଏଠିକି ଆସିବେ ବୋଲି ଖବର ପଠେଇଛନ୍ତି । ତାଙ୍କ ପୁଅ ବି ଆସିବ । କ'ଣ ହବ ବୋଉ ? ଘରେ କେହି ନାହିଁ ?"

"କାହିଁକିରେ ତୋ ନନା ଅଛି । କ'ଣ କରିବି କହ ?"ସେ ଉଠିଲେ ।

ଇନ୍ଦିରା ନିଶ୍ଚିନ୍ତ ହୋଇ ଗାଧୁଆ ଘରକୁ ଚାଲିଗଲା, ଲୁଗା ବଦଳେଇବାକୁ । ପ୍ରସାଧାନର ଶେଷ ଧାପରେ ପହଞ୍ଚିଛି, ସେ ଶୁଣିଲା ବାହାରେ ଚୌଧୁରୀଙ୍କ ଗଳା । ଗୋଟାଏ କିଏ ଇଂରେଜୀରେ କହୁଛି —

"ଏତ ଖୁବ୍ ପାଖ ବାପା, ଏମାନେ ଆମର ପଡିଶା ।"

ତରତର ହୋଇ ଦାଣ୍ଡକୁ ବାହାରି ଆସିଲା ଇନ୍ଦିରା । ନମସ୍କାର କରି ଡାକିଲା, "ଆସନ୍ତୁ ।"

ସୁବ୍ରତକୁ କୋଡକୁ ଟାଣି ନେଇ, ତା ମୁହଁକୁ ଦୁଇ ହାତରେ ଟେକି ଧରି ପଚାରିଲା, "ତୁମେ ସୁବ୍ରତ ଚୌଧୁରୀ, ନା ?"

ସୁବ୍ରତ ମୁଣ୍ଡ ଟୁଙ୍ଗାରିଲା । ମାଉସୀ ଆସି ଠିଆ ହେଲେ । ସତ୍ୟବ୍ରତ ନମସ୍କାର କରି କହିଲା, "ଆମେ ପୁଣି ଆସିଛୁଁ ମାଉସୀ । ଏ ମୋ ପୁଅ ସୁବ୍ରତ ।"

ସୁବ୍ରତକୁ କୋଡକୁ ଟାଣିନେଲେ ଇନ୍ଦିରାର ମାତା । ତା ମୁହଁକୁ ଅନେଇ କହିଲେ, "ତୁମ ଢେଙ୍କେଙ୍କ ପରି ହୋଇଛ ବାପା ।" ସେ ସୁବ୍ରତକୁ ନେଇ ଘରକୁ ପଶିଲେ । ସତ୍ୟବ୍ରତ ଓ ଇନ୍ଦିରା ତାଙ୍କୁ ଅନୁସରଣ କଲେ ।

ଇନ୍ଦିରାର ଶୋଇବା ଘରକୁ ନେଇଗଲେ ମାଉସୀ । ସତ୍ୟବ୍ରତ ବସିଲା ଗୋଟିଏ ଡେକ୍ ଚେୟାରରେ । ଇନ୍ଦିରା ସୁବ୍ରତକୁ ନେଇ ବସିଲା ଖଟରେ । ମାଉସୀ ଦୁଆର ମୁହଁରେ ଠିଆ ହେଲେ । ଏମାନଙ୍କ ସାଙ୍ଗରେ କି ସମ୍ପର୍କ, ସେ ବିଷୟରେ କୌଣସି ଧାରଣା ନାହିଁ ସୁବ୍ରତର । ତଥାପି ସେ ଇନ୍ଦିରାର ଦେହକୁ ଲାଗି ବସି ତାକୁ ଦେଖିଲା । ଇନ୍ଦିରା ହାତରେ

ଗୋଟାଏ ଲମ୍ବା ଲାଲ ପଥରର ମୁଦି । ତା ହାତଟା ଉଠେଇ ନେଇ ମୁଦିଟାକୁ ଭଲ କରି ଦେଖି, ସୁବ୍ରତ ପଚାରିଲା, ''ଚୁନି, ନୁହେଁ ?''

ହସି ଉଠିଲା ସତ୍ୟବ୍ରତ । ଇନ୍ଦିରା ତା ବୋଉ ମଧ୍ୟ ହସିଲେ । ସୁବ୍ରତ ବୁଝି ପାରିଲାନି କ'ଣ ଭୁଲ ହେଲା ତାର । ପାବ୍ଲିକ ସ୍କୁଲ ପିଲା । ଚୁପ୍ କରି ବସିଲା । ତାକୁ କୋଡକୁ ଆଉଜେଇ ନେଲା ଇନ୍ଦିରା । ତାର ଗାଲ ଟିପି କହିଲା ଇନ୍ଦିରା, ''ହଁ ସେଟା ଚୁନି । ଯେ ପିନ୍ଧିଛି ସେ ମୁଦି, ତା ନାଁ ବି ଚୁନି । ବୁଝିଲ ଏଥର ?''

ଲାଜରେ ସୁବ୍ରତ ହସିଲା । ତା' ପରେ ଉଠି ସିଧା ହୋଇ ବସିଲା ।

ଘରକୁ ଫେରିଲା ଚିତ୍ତରଞ୍ଜନ । ତା ବୋଉ ଚାଲିଗଲେ ।

ସତ୍ୟବ୍ରତ କହିଲା, ''ଯେ କିଏ, ତୁ ତ ଜାଣିନୁ ?''

ସୁବ୍ରତ ମୁଣ୍ଡ ହଲେଇ ମନା କଲା ।

''ଯେ ହେଲେ ଇନ୍ଦିରା ଆଣ୍ଟି ।''

ସୁବ୍ରତ ଚାହିଁଲା ଇନ୍ଦିରା ମୁହଁକୁ । ''ଡାକିବି ଏଥର ଆଣ୍ଟି ବୋଲି ?''

ଇନ୍ଦିରା ହସି ସମ୍ମତି ଦେଲା ।

''ସେ ଡାକ୍ତର ।'' ସତ୍ୟବ୍ରତର ପୁଅକୁ ଜଣେଇ ଦେଲା ଆଣ୍ଟିର ପରିଚୟ ।

''ଓ , ହାଉ ଲାଭଲି ! ଜାଣ ଆଣ୍ଟି, ମୋର ଗୋଟାଏ ଦାନ୍ତ, ଏଇ କାଲରେ ଭାରି କଷ୍ଟ ଦଉଛି । କ'ଣ ହୋଇଛି କେଜାଣି ?''

ଇନ୍ଦିରା ତାକୁ ଆଁ କରିବାକୁ କହିଲା । ଦେଖିଲା ଦାନ୍ତକୁ । ''ପୋକ ଖାଇଛି । କିଛି ନା, ଏଇଖିଣି ଭଲ ହୋଇଯିବ ।'' ଉଠି ଯାଇ ବାକ୍ସରୁ ଔଷଧ କାଢ଼ିଲା ସେ । ତୁଳିରେ ସୁବ୍ରତର ଦାନ୍ତରେ ଲଗେଇଦେଲା । ସୁବ୍ରତକୁ ଭଲ ଲାଗିଲା । ସେ ଇନ୍ଦିରାକୁ ଦୁଇ ହାତରେ ଭିଡ଼ି ଧରି ହସି ହସି କହିଲା ''ହାଉ ଉଆଣ୍ଡାରଫୁଲ ! ଓ ଆଣ୍ଟି, ଇଉ ଆର ଏନ୍ ଏନ୍‌ଜେଲ !''

ଇନ୍ଦିରା ତା ଗାଲରେ ଗାଲ ରଖି କହିଲା, ''ତୁମେ ଭାରି ସୁନା ପିଲା । ମୁଁ ତୁମକୁ ଅନେକ ଦିନୁ ଖୋଜୁଥିଲି । ପାଉ ନ ଥିଲି ।''

''କାହିଁକି, ତୁମେ ମୋତେ ଚିଠି ଲେଖିଲନି ?'' ତା ପରେ ଇନ୍ଦିରା କୋଡରେ ମୁଣ୍ଡରଖି ଶୋଇପଡ଼ି, ତା ମୁହଁକୁ ଚାହିଁ କହିଲା ସୁବ୍ରତ, ''ମୁଁ ବି ତୁମକୁ ଖୋଜୁଛି ମୋର ସ୍ୱପ୍ନରେ, ଅନେକ, ଅନେକ ଦିନ ରାତିରେ ।''

ତାକୁ ଦୁଇ ହାତରେ ଜାକି ଧରି ମୁହଁଟାକୁ ବୁଲେଇ ଦେଇ ଉଦ୍ୟତ ଅଶ୍ରୁକୁ ସମ୍ଭାଳିଲା ଇନ୍ଦିରା । ସତ୍ୟବ୍ରତ ବୁଝିଲା । ସେ ଅବସ୍ଥାକୁ ସ୍ୱାଭାବିକ ହବାକୁ ସମୟ ଦେବାପାଇଁ ସିଗ୍ରେଟ କାଢ଼ି ଲଗେଇଲା । କୋହଟା ସମ୍ଭାଳି ନେଇ ସୁବ୍ରତକୁ ଚାହିଁ ହସିଲା ଇନ୍ଦିରା । ସୁବ୍ରତ ବୁଝି ପାରିଲା ନାହିଁ, ଆଣ୍ଟି ଆଖିରେ ଲୁହ କାହିଁକି ? ସେ ବଲବଲ କରି ତା ମୁହଁକୁ ଅନେଇଲା ।

ଇନ୍ଦିରା ଉଠି ଠିଆ ହୋଇ ସୁବ୍ରତକୁ କୋଡରେ ଜାକି ଧରି ଘରୁ ବାହାରିଗଲା । ସତ୍ୟବ୍ରତ ଏକା ବସି ବସି ସିଗ୍ରେଟ ଟାଣିଲା । ପ୍ରଥମ ପରିଚୟର ଏହି ଅଶ୍ରୁ ସଜଳ ପରିସ୍ଥିତି ତା ମନକୁ ମଧ୍ୟ ସଞ୍ଚାରିତ ହେଲା ।

ପଶି ଆସିଲା ଚିରରଞ୍ଜନ । ନମସ୍କାର କରି ଚୌକିରେ ବସିଲା । ନମ୍ର କଣ୍ଠରେ ପଚାରିଲା ।

"ଆପଣ କ'ଣ ଆଜି କଟକ ଆସିଲେ ?"

"ନା, କାଲି ରାତିରୁ ଆସିଲିଣି । ସୁବ୍ରତ ଆଜି ସକାଳୁ ପହଞ୍ଚିଲା ମେଲ୍‌ରେ ।"

"ରହିବେ ତ ଏଠି ଦଶହରା ଯାକେ ?"

"ହଁ, ଶୁଣନ୍ତୁ । ମୋତେ ଟିକିଏ ଯଦି ସାହାଯ୍ୟ କରନ୍ତେ, ଭାରି ଉପକୃତ ହୁଅନ୍ତି ।"

ମନୋରଞ୍ଜନ ଗୋଟାଏ ଟିପୟ ଆଣି ରଖିଲା ସତ୍ୟବ୍ରତ ଆଗରେ । ତା' ପରେ ଆସିଲେ ତା ବୋଉ । ହାତରେ ଜଳଖିଆ । ସତ୍ୟବ୍ରତ ଦେଖିଲା ଏକା ତା'ରି ପାଇଁ ଆସିଛି ।

ପଚାରିଲା, "ସୁବ୍ରତ କାହିଁ ?"

"ସେ ତ ଚୁନି ପାଖରେ ।" ମାଉସୀ କହିଲେ ।

"ଚୁନି ତାକୁ ଖୋଇ ଦେଉଛି । ଦିଜଣ ଗପ କରୁଛନ୍ତି ।"

ନିର୍ବିବାଦରେ ଏଣୁ ତେଣୁ କ'ଣ ଟିକିଏ ଖାଇଲା ସତ୍ୟବ୍ରତ । ଚା' ପିଆଲାଟା ଉଠେଇ ନେଇ ଚିରରଞ୍ଜନ ଆଡ଼କୁ ଘୂରି କହିଲା ।

"ହଁ, କ'ଣ କହୁଥିଲି କି ? ନବମୀଦିନ କେତେଜଣଙ୍କୁ ନିମନ୍ତ୍ରଣ କରିବି ବୋଲି ଭାବୁଛି । ଅଳ୍ପ ଟିକିଏ ଖିଆଦିଆ । ବୁଝିଲେ, ଏଠି ତ ମୋର କେହି ନାହିଁ । ଜଣାଶୁଣା ବି କେହି ନାହାନ୍ତି । ଆପଣ ଯଦି ଟିକିଏ ସାହାଯ୍ୟ କରନ୍ତେ, ତା ହେଲେ ବଡ଼ ଉପକୃତ ହୁଅନ୍ତି ।"

ମାଉସୀ କହିଲେ "ମଲା, ନିଶ୍ଚୟ କରିବ । କି କଥା ଯେ । ଏଇଖିଣି ତ କଲେଜ ଛୁଟି । ଚିରର ଆଉ କି କାମ ?"

"କାଲି ସକାଳୁ ଆପଣଙ୍କର ସମୟ ହେବ ?" ସତ୍ୟବ୍ରତ ପଚାରିଲା ଚିରରଞ୍ଜନଙ୍କୁ ।

"ତାକୁ ଆପଣ ଆପଣ କ'ଣ କରୁଛ ବାପା ?" ମାଉସୀ କହିଲେ, "ସେ ତୁମଠୁ ସାନ । ତାକୁ ତୁମେ କହିବ ।"

"ହଁ ହଁ" ଚିରରଞ୍ଜନ କହିଲା, "ମୁଁ କାଲି ଆଠଟାବେଳକୁ ଆପଣଙ୍କ ସାଙ୍ଗରେ ଦେଖା କରିବି ।"

ଇନ୍ଦିରା ହାତକୁ ଟାଣି ଟାଣି ଆଣି ପଶିଲା ସୁବ୍ରତ ।

"ବାପା, ଆଣ୍ଟି କହିଲେ, କଟକରେ ଖୁବ୍ ଭୀଷଣ ଦୁର୍ଗାପୂଜା ହୁଏ । ମୋତେ ସେ ପୂଜା ଦେଖେଇବାକୁ ନେଇଯିବେ । ଯିବି ବାପା ?"

"ବେଶ୍ ତ , ଯିବୁ ।"

ଆଣ୍ଟିଙ୍କୁ ଟାଣି ଆଣି ଖଟରେ ବସେଇ ନିଜେ ତା ଦେହକୁ ଆଉଜି ବସିଲା । ଇନ୍ଦିରାର ଗୋଟାଏ ହାତକୁ ଟାଣି ଆଣି ତା' ଆଙ୍ଗୁଳି ଗୁଡାକ ନେଇ ଖେଳୁ ଖେଳୁ କହିଲା ।

"କାଲି ଡେଣ୍ଟିଷ୍ଟ ପାଖକୁ ଯିବା ? ତୁମେ ମୋତେ ନେଇଯିବ ଆଣ୍ଟି । ଆମ ଗାଡିରେ ଯିବା ?"

ଇନ୍ଦିରା କହିଲା, "ହଉ ।"

''ତାପରେ ଯିବା ମେଢ଼ ଦେଖି । ଓଃ, ଜାଣିଛ ବାପା'' ଉଠି ବସିଲା ସେ, ''ଏଠି ଦୁଇଶ ମେଢ଼ ହୁଏ । ବାବା, କେତେ !''

ପୁଣି ଶୋଇ ପଡ଼ିଲା ଇନ୍ଦିରା କୋଡରେ । ତା ଆଡକୁ ଅନେଇ କହିଲା, ''ଦୁର୍ଗା ବର ଦିଅନ୍ତି, ନା ଆଣ୍ଟି ? ମୋର ଜଣେ ସାଙ୍ଗ କହୁଥିଲା, ଖଇରାଗଡର ଡ଼ିଗମି ମ, ତାର ଜଣେ ଫୋର ଫାଦାର, ଦୁର୍ଗାଙ୍କ ପାଖରୁ ବର ପାଇ ରଜା ହୋଇଥିଲେ । ହଁ, ସତକଥା ଆଣ୍ଟି, ଚୁଇକଦନର ପ୍ରଭଞ୍ଜନ,ସେ ବି ସେ କଥା ଜାଣେ । ''

''ତୁମ ଜେଜେବାପାଙ୍କ ବାପା, ବାସୁଦେବ ଚୌଧୁରୀ, ଭାରି ଦେବୀଭକ୍ତ ଥିଲେ । ଭାରି ଜାକଜମକରେ ଦୁର୍ଗାପୂଜା କରୁଥିଲେ । '' ଖବରଟା ଦେଲେ ମାଉସୀ ।

''ସୋ ଦେଖିଲ ? ମୁଁ ଜାଣେ, ଦୁର୍ଗା ବର ଦିଅନ୍ତି । ''

ଏଥର ବିଦାୟ ନେବାକୁ ହବ । ଘଡ଼ି ଦେଖିଲା ସତ୍ୟବ୍ରତ, ଛ'ଟା ବାଜିବ । ଉଠି ଠିଆ ହେଲା ସେ । ''ମୁଁ ଯାଏଁ ମାଉସୀ । '' ଚିରକୁ କହିଲା, ''କାଲି ଆଠଟାବେଳକୁ, ନା କ'ଣ ?''

ଚିରରଞ୍ଜନ ସମ୍ମତି ଜଣେଇଲା ।

ଘର ଭିତରୁ ବାହାରି ଆସିଲେ ସମସ୍ତେ । ସୁବ୍ରତ ଇନ୍ଦିରାର ହାତ ଧରିଥାଏ । ଟାଣି ଟାଣି ନେଇଗଲା ତାକୁ ସଡକକୁ । ଶେଷରେ ତାକୁ ଦୁଇ ହାତରେ କୁଣ୍ଢେଇ ଧରି କହିଲା, '' ଓ ଆଣ୍ଟି, ହାଉ ଆଇ ଲାଭ୍ ଇଉ । ''

ଇନ୍ଦିରା ନଇଁପଡ଼ି ତା ଗାଲରେ ଚୁମା ଦେଲା । ଖୁସି ହୋଇ ବାପା ସାଙ୍ଗରେ ଚାଲିଗଲା ସୁବ୍ରତ ।

## ବାର

ଅଷ୍ଟମୀ ଦିନ ସକାଳ । ଉତ୍ସବର ଆବହାଓଆ ଆହୁରି ଘନ ହୋଇ ଉଠୁଛି । ସକାଳର ସୂର୍ଯ୍ୟ କିରଣରେ ସୁନେଲି ରଙ୍ଗ । ଚାରିଆଡେ ବାଦ୍ୟ, ଚାରିଆଡେ ପୂଜା । ଦଳ ଦଳ ହୋଇ ଲୋକ ଚାଲିଛନ୍ତି ସଡକରେ । ସେଦିନ କଟକ ଚଣ୍ଡୀରେ ଭୀଷଣ ଭିଡ । ସ୍ୱତନ୍ତ୍ର ଅଷ୍ଟମୀ ପୂଜାର ବ୍ୟବସ୍ଥା ହୋଇଛି । ନାରୀ ପୁରୁଷରେ ଭରି ଯାଇଛି ମନ୍ଦିର ସମ୍ମୁଖର ରାସ୍ତା । ସୁବ୍ରତର ଆଖିରେ ଉତ୍ସବର ଉତ୍ସାହ ।

ବାପ ପୁଅ ପ୍ରାତରାଶ ସାରି ଉଠିଲା ବେଳକୁ ସନିଆ ଖବର ଦେଲା, ଡାକ୍ତର ସାନ୍ତାଣୀ ଓ ତାଙ୍କ ଭାଇ ଆସିଛନ୍ତି ।

''ଡାକ୍ତର ସାନ୍ତାଣୀ କିଏ ବାପା ? '' ସୁବ୍ରତ ପଚାରିଲା ।

''ତୋ ଆଣ୍ଟିରେ । '

''ଆଣ୍ଟି !'' ଦଉଡିଲା ସେ ସିଡ଼ି ଆଡକୁ । ଦୁଇ ଦୁଇଟା କରି ପାହାଚ ଏକା ସାଙ୍ଗରେ ଓହ୍ଲେଇ ଧାଇଁଲା ଯାଇ ଇନ୍ଦିରାକୁ ।

"ଓ ଆଣ୍ଟି, ତୁମେ ଆସିଛ ? ଚାଲ ଉପରକୁ ।"

ଇନ୍ଦିରା ହାତ ଧରି ଟାଣିଲା ସେ । ସତ୍ୟବ୍ରତ ସିଡ଼ି ଉପର ବାରନ୍ଦାରେ ଠିଆ ହୋଇ ଥାଏ । ତାକୁ ଦେଖି ଇନ୍ଦିରା କହିଲା, "କି ପୁଅ ଆପଣଙ୍କର ? ଏକୁ ଛାଡ଼ି ରହନ୍ତି କିମିତି ?"

"ସେ ଦୁଃଖ କ'ଣ ଏ ଦୁନିଆରେ କେହି ବୁଝେ ଇନ୍ଦିରା ଦେବୀ ! କିନ୍ତୁ ଆପଣମାନେ ଏଠି ଠିଆ ହୋଇ ରହିଲେ ଯେ । ଭିତରକୁ ଆସନ୍ତୁ ।"

ସମସ୍ତେ ପଶିଲେ ବୈଠକ ଖାନାକୁ । ଚିରରଞ୍ଜନକୁ ନେଇ ସତ୍ୟବ୍ରତ ବସିଲା ଗୋଟାଏ କୋଣରେ । କାଲିକା ଭୋଜିର ବ୍ୟବସ୍ଥା କରିବାରେ ସେମାନେ ମନୋନିବେଶ କଲେ । ଇନ୍ଦିରାକୁ ଟାଣି ନେଇଗଲା ସୁବ୍ରତ ତା ଶୋଇବା ଘରକୁ । ତାକୁ ବସେଇଲା ନେଇ ନିଜ ଖଟରେ । ତା' କୋଡରେ ମୁଣ୍ଡ ରଖି ଚିତ୍ ହୋଇ ଶୋଇପଡ଼ି ତା ଆଡକୁ ଚାହିଁ ମୁରୁକି ମୁରୁକି ହସିଲା ।

"ଜାଣ ଆଣ୍ଟି, କାଲି ରାତିରେ ମୁଁ ତୁମକୁ ସ୍ୱପ୍ନ ଦେଖିଛି ।"

"ସତେ ନା ?"

"ହଁ, କ'ଣ ସ୍ୱପ୍ନ ଦେଖିଲି ଜାଣ ? ଦେଖିଲି, ମୋ ଦେହ ଭାରି ଖରାପ ହୋଇଛି, ବାପା ଯାଇଛନ୍ତି କୁଆଡେ, ମୁଁ ବିଛଣାରେ ଶୋଇ ଶୋଇ କାନ୍ଦୁଥାଏ ଆଉ କହୁଥାଏଁ, ଆଣ୍ଟି ଥାନ୍ତେ କି । କହିଛି କି ନାହିଁ, ତୁମେ ଆସି ପହଞ୍ଚିଗଲ । ତୁମକୁ ଦେଖି ମୋ ଦେହ ଭଲ ହୋଇଗଲା । ଓ ଆଣ୍ଟି, ତୁମେ କେତେ ଭଲ ।" ଇନ୍ଦିରାର ଗୋଟିଏ ହାତ ଟାଣିଆଣି ତା ଗାଲ ଉପରେ ରଖି ମିଟିମିଟି କରି ଅନେଇଲା ସୁବ୍ରତ । ଇନ୍ଦିରା ହସୁଥାଏ ଆଉ ଆଙ୍ଗୁଳିରେ ତା ଗାଲ ଥାପୁଡଉ ଥାଏ ।

"ତୁମ ଦାନ୍ତ କିମିତି ?" ପଚାରିଲା ଇନ୍ଦିରା ।

"ଭଲ, କିଛି କଷ୍ଟ ନାହିଁ ଆଉ ।"

"ତଥାପି ଡେଣ୍ଟିଷ୍ଟକୁ ଦେଖେଇବା ଦରକାର ।"

ଏଥର ଉଠି ବସିଲା ସୁବ୍ରତ । କହିଲା, "ତୁମେ ନେଇଗଲେ ମୁଁ ଯିବି । ବାପା କହୁଥିଲେ ଆଜି ଡେନ୍‌ଟିଷ୍ଟ ପାଖକୁ ଯିବେ । ତୁମେ ଯିବ ତ ?"

"ବାପାଙ୍କ ସାଙ୍ଗରେ ଯାଅ । ମୋର ଯିବା ଆଉ କଣ ଦରକାର ?"

"ନା ନା, ସେ କଥା ହବନି । ତୁମକୁ ମୁଁ ଆଉ ଛାଡ଼ିବିନି ଆଣ୍ଟି । ତୁମେ ମୋତେ ଛାଡ଼ି କୁଆଡେ ଯାଇ ପାରିବନି, ବୁଝିଲ ?"

ପୁଣି ଶୋଇ ପଡ଼ିଲା ସେ ଇନ୍ଦିରା କୋଡରେ ମୁଣ୍ଡ ରଖି । ଦୁଇ ହାତରେ ତାର ଗୋଟାଏ ହାତକୁ ଧରି ଛାତି ଉପରକୁ ଟାଣି ନେଲା ।

"ଯାଅ ନା, କୁଆଡେ ଯିବ ?" ମୁହଁ ତାର ଗମ୍ଭୀର, ଅଭିମାନ ଭରା ।

''ଦୁଷ୍ଟ, ଛାତ, '' ହସିଲା ଇନ୍ଦିରା । ''ମୁଁ କୁଆଡେ ଯିବିନି ଯେ, କିନ୍ତୁ ଡେନ୍‌ଟିଷ୍ଟ ପାଖକୁ ଯାଇ ଦେଖେଇ ଆସ ଦାନ୍ତ । ''

'' ମୁଁ ଡେନ୍‌ଟିଷ୍ଟ ପାଖକୁ ଯିବି, ତୁମେ ଯଦି ଯାଅ । ଆଦାରଉଆଇସ୍ ନଟ୍ ।''

ଇନ୍ଦିରା କୋଡ଼ରେ ମୁହଁ ଲୁଚେଇ ଶୋଇଲା ସୁବ୍ରତ ।

ଇନ୍ଦିରା ତା ମୁହଁକୁ ଟେକି ତା କାନରେ ଚୁପଚୁପ କହିଲେ, ''ଯିବି, ମୁଁ ଯିବି ତୁମ ସାଙ୍ଗରେ । ''

ଏକା ଡିଆଁକେ ତଳେ ଠିଆ ହେଲା ସୁବ୍ରତ ।

''ମୁଁ ବାପାଙ୍କୁ କହେଁ । ଏଇଖିଣି ଯିବା । ''

ତା ଘଡ଼ି ଦେଖିଲା ସୁବ୍ରତ । ''ନ'ଟା ବାଜିବ । ମୁଁ ବାପାଙ୍କୁ କହିଆସେ । ତୁମେ ଏଠି ବସିଥିବ ।''

ବାହାରି ଗଲା ସେ । ଇନ୍ଦିରା ବସି ବସି ଭାବିଲା ସୁବ୍ରତ କଥା । କି ସ୍ନେହକାଙ୍ଗାଳ ଏ ପିଲାଟା । ମା'କୁ ଜାଣେନି, ଶୈଶବ କଟିଛି ଆଈ ପାଖରେ । ତା ପରେ ସ୍କୁଲରେ । କାଲି ରାତିରେ ସେ ବି ସ୍ୱପ୍ନ ଦେଖିଛି ସୁବ୍ରତକୁ । ତାକୁ ଭିଡ଼ିଧରି କହୁଛି ତୁମେ ମୋତେ ଛାଡି କୁଆଡେ ଯିବନି ଆଣ୍ଟି । ତା ହେଲେ ମୁଁ ମରିଯିବି । ତା ପରେ ସୁବ୍ରତ କୁଆଡେ ଚାଲିଗଲା ତା ବାପାଙ୍କ ସାଙ୍ଗରେ । ସେ କେତେ କାନ୍ଦିଲା ତା ପାଇଁ । ନିଦ ଭାଙ୍ଗିଗଲା ତାର, ତକିଆ ଭିଜିଯାଇଛି ଲୁହରେ ।

ଫେରି ଆସିଲା ସୁବ୍ରତ — ଭାରି ଖୁସି । ତା ଦେହକୁ ଲାଗି ଠିଆ ହେଲା । କହିଲା ''ବାପାଙ୍କ କାମ ସରିଗଲାଣି । ସେ କହିଲେ ଦଶ ମିନିଟ୍ ଭିତରେ ବାହାରିବେ । ତୁମେ ରେଡି ତ ?''

''ହଁ । ''

''ଆଚ୍ଛା ଆଣ୍ଟି । ଯଦି ଡେଣ୍ଟିଷ୍ଟ ଦାନ୍ତ ଉଠେଇବାକୁ କହେ । ''

''ଉଠେଇ ଦବ । ''

''ଭାରି କାଟିବ ଆଣ୍ଟି । ଆରଥର ଦାନ୍ତ ଉଠେଇଲା ବେଳେ ମୋର ଭାରି କଷ୍ଟ ହୋଇଥିଲା । ''

''ଏଥର କଷ୍ଟ ହବନି । ଭଲ ଡେଣ୍ଟିଷ୍ଟ ପାଖକୁ ଯିବା । ''

''ହଁ ତୁମେ ତ ଡାକ୍ତର । ଡେଣ୍ଟିଷ୍ଟକୁ କହିବ, ଯିମିତି ମତେ ନ କାଟେ । ''

''କହିବି । ମୁଁ ତ ସେଠି ଥିବି । ତୁମର ଭୟ କ'ଣ ? ''

''କରେକ୍ଟ । ତୁମେ ମୋ ପାଖରେ ଥିଲେ ମୋର କିଛି ଡରିବାର ନାହିଁ । ଓ,ହାଉ ଆଇ ଲଭ୍ ଇଉ । ''

ସତ୍ୟବ୍ରତ ବାହାରେ ଠିଆ ହୋଇ ଏମାନଙ୍କ କଥାବାର୍ତ୍ତା ଶୁଣୁଥିଲା । ପଶି ଆସିଲା ପର୍ଦ୍ଦା ଆଡେଇ । ଇନ୍ଦିରା ଖଟରୁ ଓହ୍ଲେଇବାକୁ ଯାଉଥିଲା । ସୁବ୍ରତ ତା ଅଣ୍ଟାକୁ ଦୁଇ ହାତରେ ଧରି ଠିଆ ହୋଇ ରହିଲା ।

"ସୁବ୍ରତ ଆପଣଙ୍କୁ ହଇରାଣ କରୁଥିବ ? " ପଚାରିଲା ସତ୍ୟବ୍ରତ ।

"ନା, ହଇରାଣ କାହିଁକି କରିବ । ସେ ତ ଗୁଡ ବୟ । "

"ଆପଣ ତ ଜାଣନ୍ତି ସବୁ । " ସୁବ୍ରତକୁ ପଚାରିଲା ।

"କିରେ ଯିବା ପରା ଡେଣ୍ଟିଷ୍ଟ ପାଖକୁ ? ଚାଲ । "

ଓହ୍ଲେଇଲେ ତିନିଜଣ ସିଡ଼ିରେ । ଆଗ ସତ୍ୟବ୍ରତ । ତା ପଛକୁ ସୁବ୍ରତକୁ ଧରି ଇନ୍ଦିରା । ଗାଡିରେ ବସିଲେ ଯାଇ ।

ଇନ୍ଦିରାର ନିର୍ଦ୍ଦେଶରେ ଏଥର ଜଣେ ନୂଆ ଡେଣ୍ଟିଷ୍ଟ ପାଖକୁ ଗଲେ । ଚେୟାରରେ ବସିଲା ସୁବ୍ରତ । ଇନ୍ଦିରା ତା ପଛରେ ଠିଆ ହେଲା । ଡେଣ୍ଟିଷ୍ଟ ପରୀକ୍ଷା କରି କହିଲା, ଦାନ୍ତ ଉଠେଇବା ଦରକାର ନାହିଁ । ସେ ସିମେଣ୍ଟ ଦେଇ ବନ୍ଦ କରିଦେବ । ଅଧଘଣ୍ଟାକ ଭିତରେ କାମ ସାରି ସେମାନେ ବାହାରି ଆସିଲେ । ସୁବ୍ରତ ଭାରି ଖୁସି । ଆଣ୍ଟି ଥିଲା ବୋଲି ତାର କିଛି କଷ୍ଟ ହେଲା ନାହିଁ । ଗାଡିରେ ବସିଲାବେଳକୁ ସେ ଇନ୍ଦିରା ଆଡକୁ ଆଉଜି ବସିଲା । ଇନ୍ଦିରା ମଧ ବାଁ ହାତରେ ତାକୁ ପାଖକୁ ଟାଣିନେଲା । ସତ୍ୟବ୍ରତ ସବୁ ଦେଖିଲା, ହସିଲା ଟିକିଏ । ଉଁ ଚୁଁ ନ କରି ଗାଡି ଷ୍ଟାର୍ଟ କଲା ।

ଚୌଧୁରୀ କୋଠିରେ ପହଞ୍ଚିଲାରୁ ଗାଡିରୁ ଓହ୍ଲେଇ ପଡ଼ିଲେ ସମସ୍ତେ । ସତ୍ୟବ୍ରତ ଘରକୁ ଯାଉଥିଲା, ପଛରୁ ଡାକିଲା ସୁବ୍ରତ, "ବାପା ?"

ଘୂରି ଠିଆ ହେଲା ସତ୍ୟବ୍ରତ ।

"ମୁଁ ଆଣ୍ଟି ଘରକୁ ଯାନ୍ତି ଟିକିଏ ? ଯିବି ? "

ସତ୍ୟବ୍ରତ ଚାହିଁଲା ଇନ୍ଦିରାକୁ । ମୁରୁକି ମୁରୁକି ହସୁଛି ସେ । ସୁବ୍ରତ ଠିଆ ହୋଇଛି ତା ଡାହାଣ ହାତ ଧରି । କହିଲା, "ଯା । " ମହାଖୁସିରେ ସୁବ୍ରତ ଚାହିଁଲା ଇନ୍ଦିରାକୁ —

"ସୋ କମ୍ ଅନ୍ ଆଣ୍ଟି । "

ଦୁଇଜଣ ଗଳି ଭିତରେ ଅଦୃଶ୍ୟ ହୋଇଗଲେ ।

ଖାଇବା ବେଳ ହେଲା, ସୁବ୍ରତର ଦେଖା ନାହିଁ । ଘର ଦୁଆର ହେଲା ସତ୍ୟବ୍ରତ । ଘଡ଼ି ଦେଖିବାକୁ ଲାଗିଲା । ବାରଟା ବାଜିଲାରୁ ସେ ପଠେଇଲା ସନିଆକୁ ଇନ୍ଦିରା ଘରକୁ । ଫେରି ଆସି ସନିଆ କହିଲା, "ସାନବାବୁ ସେଠି ଗାଧୋଇ ପାଧୋଇ,ଖାଇ, କାହାଣୀ ଶୁଣୁଛନ୍ତି । "

''କାହାଣୀ ଶୁଣୁଛି ? କିଏ କହୁଛି ?''

''ସେଇ ଆଈ । ଗୋଟାଏ ଖଟରେ ସାନବାବୁ ଶୋଇଛନ୍ତି । ଆଈଙ୍କ କୋଡରେ ମୁଣ୍ଡ, ଗୋଡ ଲଦିଛନ୍ତି ଡାକ୍ତର ସାନ୍ତାଣୀଙ୍କ ଉପରେ । ଆଈ କାହାଣୀ କହୁଛନ୍ତି । '' ହସି ହସି କହିଲା ସେ । ସତ୍ୟବ୍ରତ କଳ୍ପନା କଲା ଦୃଶ୍ୟଟା । ଟୋକାଟା ତାକୁ ତ୍ୟାଗ କଲା ନା କ'ଣ ? ଇନ୍ଦିରାକୁ ଈର୍ଷା କଲା ସେ । ଏଇ ଝିଅଗୁଡା ଭାରି ଚାଲାଖ । କେତେ ଶୀଘ୍ର ଆପଣାର କରି ନିଅନ୍ତି ପିଲାଙ୍କୁ । ମନେ ମନେ ଖୁସି ବି ହେଲା ।

ସଂଧ୍ୟାବେଳକୁ ଆସିଲା ସୁବ୍ରତ ଇନ୍ଦିରା ସାଙ୍ଗରେ । ସେଇ ସ୍ତିମିତ ଆଲୁଅରେ ଅନେଇଲା ସତ୍ୟବ୍ରତ ଇନ୍ଦିରାକୁ । ଖଣ୍ଡେ ସାଧାରଣ ଶାଢ଼ି ଆଉ ବ୍ଲାଉଜ୍ ପିନ୍ଧିଛି ସେ । ମୁଣ୍ଡର ବାଳଗୁଡା ଅବିନ୍ୟସ୍ତ । କିନ୍ତୁ ସେଥିରେ ବି ଗୋଟାଏ ବୈଶିଷ୍ଟ୍ୟ ଅଛି ଇନ୍ଦିରାର । ଅପୂର୍ବ ଦିଶିଲା ଇନ୍ଦିରା, ତା ଆଖିରେ । କ'ଣ କହିବ କଥା ଖୋଜି ପାଇଲାନି । ଖାଲି କହିଲା, ''ବସନ୍ତୁ । '' ପିଣ୍ଡାରେ ଗୋଟାଏ ଆରାମ ଚୌକିରେ ବସିଥିଲା ସତ୍ୟବ୍ରତ । ପାଖ ଚୌକିରେ ବସିଲା ଇନ୍ଦିରା । ସୁବ୍ରତ ଇନ୍ଦିରା ପାଖରେ ଠିଆ ହେଲା ।

''କିରେ, ଆଜି ଆଣ୍ଟି ଘରେ ରହିଗଲୁ ? '' ପଚାରିଲା ସତ୍ୟବ୍ରତ ।

''ହୁଁ । '' ହସିଲା ସୁବ୍ରତ ।

''ସେ ମୋତେ ସାଙ୍ଗରେ ଆଣିଛି । ଲୁଗା ବଦଳେଇ ମୋ ସାଙ୍ଗରେ ଆମ ଘରକୁ ଫେରିଯିବ । '' ଇନ୍ଦିରା କହିଲା, ''ଆପଣଙ୍କ ପାଖରୁ ଅନୁମତି ଆଦାୟ କରିବାର ଭାର ମୋ ଉପରେ ପଡ଼ିଛି । ''

ସତ୍ୟବ୍ରତ ଅନେଇଲା ପୁଅକୁ, ସେ ହସୁଛି ।

''କାହିଁକି, ବାପ ପାଖରେ ରହିବାକୁ ଭଲ ଲାଗୁନି ବାବୁଙ୍କୁ ?''

''ଏଠି କଣ ଅଛି ଯେ ସେ ତାକୁ ଅଟକେଇ ରଖିବ ?'' ଇନ୍ଦିରା କୈଫୟତ ଦେଲା ।

''ତା ବି ଠିକ୍ । ଆଚ୍ଛା ଯାଉ, ଆପଣଙ୍କ ପାଖରେ ରହିବ ତ । ମୁଁ ନିଶ୍ଚିନ୍ତ ।''

ଖୁସି ହୋଇ ଦଉଡିଲା ସୁବ୍ରତ ଘର ଭିତରକୁ ।

''ଏଠି ବସି ବସି କ'ଣ ଭାବୁଛନ୍ତି ?'' ପଚାରିଲା ଇନ୍ଦିରା ।

''କ'ଣ ଭାବୁଛି ? ଭାବନାର କ'ଣ ଆଦି ଅନ୍ତ ଅଛି ଇନ୍ଦିରାଦେବୀ । '' ଦୀର୍ଘ ନିଶ୍ୱାସ ପକେଇଲା ସତ୍ୟବ୍ରତ । ''ଯାଃ, ଗୋଟାଏ ଭାବନା ମୋର କମିଲା । ''

''କଉଟା ? '' ପୁଣି ପ୍ରଶ୍ନ କଲା ଇନ୍ଦିରା ।

''ଏଇ ସୁବ୍ରତ କଥା । ଏଠି ଏଇ କେତେଦିନ ତା ପାଇଁ ମୋର ଚିନ୍ତା କରିବାର କିଛି ନାହିଁ । ସେ ଆପଣଙ୍କ ପାଖରେ ରହିବ । କିଛି ଦୁଷ୍ଟାମି କରୁନି ତ ସେ ?

''ସୁବ୍ରତ ଦୁଷ୍ଟ ପିଲା ନୁହେଁ । ମୁଁ ଭାବୁଥିଲି, ସେ ଆପଣଙ୍କ ପରି ହୋଇଥିବ, ଦୁର୍ଦ୍ଧାନ୍ତ ଦୁଃସାହସୀ, ବେପରୁଆ ! ସେ ତା ନୁହେଁ । ଭାରି ଶାନ୍ତ, ଭାରି ବାଧ୍ୟ, ଭାରି ସ୍ନେହ ଲୋଭୀ । ଅଭିମାନର ଲୁହ ତା ଆଖି ଆଗରେ । ମୋତେ ଆଜି କ'ଣ କହୁଥିଲା ଜାଣନ୍ତି ?'

''ନା, କ'ଣ ?''

''କହୁଥିଲା,ଆଣ୍ଟି ତୁମେ ଅନୁଗୁଳ ଚାଲ । ''

''ଆସନ୍ତୁ । ଆପଣଙ୍କର ତ ଛୁଟି ଅଛି । ''

''ତା ମାନେ ? '' ପଚାରିଲା ଇନ୍ଦିରା ।

''ମାନେ ପଚାରିଲେ କିଛି କହିବାର ନାହିଁ । ମୋର କୌଣସି ଦାବୀ ନାହିଁ । ସୁବ୍ରତ ଯଦି ପାରେ ସେ ଅଲଗା କଥା । ''

ଇନ୍ଦିରା କିଛି ଉତ୍ତର ନ ଦେଇ ବସି ରହିଲା । ଅନ୍ଧାର ହୋଇଗଲାଣି । ବାହାରେ ସଡକରେ ଉତ୍ସବର ଭିଡ଼ । ଚୌଧୁରୀ ଘର ଆଗ ମେଢ଼ଟାରେ ବହୁତ ଆଲୁଅ ଜଳୁଛି । ପ୍ରତିଫଳିତ ହେଉଛି ବାରନ୍ଦାର କାନ୍ଥରେ ।

ଗୋଟାଏ ଦୀର୍ଘ ନିଶ୍ୱାସ ପକେଇ ସିଧା ହୋଇ ବସିଲା ସତ୍ୟବ୍ରତ । ପଚାରିଲା, ''ସୁବ୍ରତ ଯଦି ଜିଦ୍ କରେ । ଆପଣ ଯିବେନି ଅନୁଗୁଳ ? ''

''ସୁବ୍ରତ ସିମିତି ଜିଦ୍ କରିବନି । ''

''ଖୁବ୍ ସମ୍ଭବ କରିବନି ଏଥର । ଭବିଷ୍ୟତରେ ଯଦି କରେ ?''

''ସେ କଥା ଭବିଷ୍ୟତରେ ବିଚାର କରାଯିବ । ''

'' ଠିକ୍ କହିଛନ୍ତି । '' ପୁଣି ଆଉଜି ବସିଲା ସତ୍ୟବ୍ରତ ।

ବାରନ୍ଦାକୁ ଆସିଲା ସୁବ୍ରତ । ସୁଇଚ ଟାଣିଲାରୁ ବାରନ୍ଦା ଆଲୋକିତ ହେଲା । ଇନ୍ଦିରା ଦେଖିଲା, ସୁବ୍ରତ ପିନ୍ଧିଛି ଚୂଡିଦାର ପାଇଜାମା, ଲେସଦିଆ ପତଳା କନାର ପଞ୍ଜାବି, ଗୋଡରେ ଜରିର ନାଗରା । ମୁହଁରେ ତାର ହସ । ତାକୁ ଦେଖି ଆନନ୍ଦିତ ହେଲା ଇନ୍ଦିରା । ଏଇ ତ ରାଜପୁତ୍ର, ଯାହା କଥା ସେ ଶୁଣୁଥିଲା ବଉ ପାଖରୁ, ଦିପହରବେଳେ ।

''ଉଠ ଆଣ୍ଟି, ଲେଟ୍ ଆସ୍ ଗୋ '' ଇନ୍ଦିରାର ହାତ ଟାଣିଲା ସୁବ୍ରତ ।

''କେତେବେଳେ ଫେରିବ ସେ ?'' ସତ୍ୟବ୍ରତ ପଚାରିଲା ।

''ରାତିରେ ଫେରିବା ଦରକାର ?'' ଇନ୍ଦିରା ପ୍ରଶ୍ନ କଲା ଓଲଟା ।

''ଓ, ସେଠି ରହିବ ଆପଣଙ୍କ ପାଖରେ, ହଉ । ''

ଇନ୍ଦିରା ଓ ସୁବ୍ରତ ତଳକୁ ଚାଲିଲେ ।

## ତେର

ନବମୀ ଦିନ ସକାଳୁ ଉଠି ଜଲଦି ଜଲଦି କାମ ସାରି ନେଲା ସତ୍ୟବ୍ରତ । ଆଜି ତାର ଭୋଜି, ନିମନ୍ତ୍ରଣ କରିବାକୁ ଯିବାକୁ ହେବ । ଏକା ଏକା ପ୍ରାତରାଶ ଖାଇ ନେଲା ସେ । ସୁବ୍ରତ ନାହିଁ । ଆଠଟା ବେଳକୁ ଚିତ୍ତରଞ୍ଜନ ଆସିଲା । ବଜାରକୁ ଯିବ ସେ —

ତାକୁ ଟଙ୍କା ଦେଲା । ତଳକୁ ଓହ୍ଲେଇ ଠିକ୍ କଲା ଆଗ ଯିବ ଇନ୍ଦିରା ଘରକୁ । ସେଠୁ ନିମନ୍ତ୍ରଣ ସାରି ମନୁକୁ ନେଇ ଯିବ ହୃଷୀକେଶଙ୍କ ଘରକୁ । ତା' ପରେ ଅନ୍ୟମାନଙ୍କୁ ପାଖକୁ ।

ଗଳି ଭିତରେ ପଶିଲା ସେ । ଶୁଣିଲା ତୀବ୍ର ସ୍ୱର — ସୁବ୍ରତର । ପାଟି କରୁଛି ସେ, "ଦେଟ ଉଆସ୍ ଏ ଡଲି କେଚ୍ । ଶେମ୍ ଇଉ ଡ୍ରପଡ୍ ଇଟ୍ । " ପୁଣି ଶୁଭିଲା, "ହି ଇସ୍ ଆଉଟ୍ । କ୍ଲିନ୍ ବୋଲ୍ଡ୍ । " ବୁଝିଲା ସତ୍ୟବ୍ରତ, କ୍ରିକେଟ୍ ଖେଳୁଛି ତା ପୁଅ । ଇନ୍ଦିରା ଘର ପାଖରେ ପହଞ୍ଚି ଦେଖିଲା, ଚାରି ପାଞ୍ଚୋଟି ପିଲା ଖେଳୁଛନ୍ତି । ଇନ୍ଦିରା ବସିଛି ପିଣ୍ଡାରେ । ସୁବ୍ରତ ତା ପିଠିରେ ଲାଉ ହୋଇଛି । ବାପାକୁ ଦେଖି ଠିଆ ହେଲା ସୁବ୍ରତ । ଇନ୍ଦିରା ମଧ ଠିଆ ହୋଇ ପଡ଼ି ଡାକିଲା, "ଆସନ୍ତୁ । " ପିଲାଙ୍କ ଖେଳ ବନ୍ଦ ହୋଇଗଲା ।

ପିଣ୍ଡା ଉପରକୁ ଉଠୁ ଉଠୁ ସତ୍ୟବ୍ରତ କହିଲା, "ମୁଁ ଆସିଛି ଆପଣଙ୍କୁ ନିମନ୍ତ୍ରଣ କରିବାକୁ । ମାଉସୀ କାହାନ୍ତି ?"

ଘର ଭିତରକୁ ପଶିଲେ ସେମାନେ । ମାଉସୀ ଆସିଲାରୁ ସତ୍ୟବ୍ରତ କହିଲା, "ଆଜି ସଂଧ୍ୟାବେଳେ ଆମର ସେଠିକି ସମସ୍ତେ ଯିବେ । ଅଳ୍ପ ଟିକିଏ ଖିଆଦିଆ — ଟିକିଏ ସଂଗୀତ । ବାସ୍ ସମସ୍ତେ ଯିବେ କିନ୍ତୁ । "

"ବେଶ୍ ବାପା " ମାଉସୀ କହିଲେ, "ତୁମେ ଡାକୁଛ । ଏ ତ ସୌଭାଗ୍ୟ । ନିଶ୍ଚୟ ଯିବେ ।"

"ହୃଷୀକେଶ ବାବୁଙ୍କ ଘରଟା ମୁଁ ଜାଣେନି । କେହି ଯଦି ଟିକିଏ ଦେଖେଇ ଦିଅନ୍ତେ" ଅନେଇଲା ସେ ମନୁକୁ ।

" ତୁ ସାଙ୍ଗରେ ଯା ମନୁ" ତା ବୋଉ କହିଲେ ।

ସତ୍ୟବ୍ରତ ଏତେବେଳେ ଚାହିଁଲେ ପୁଅକୁ । ଝାଳରେ ଭିଜିଯାଇଛି ତା କୁର୍ତ୍ତା ।

"ଖୁବ୍ ଖେଳ ହଉଛି, ନା ?"

"ହଁ, ସେ ସମସ୍ତଙ୍କୁ ଆଉଟ୍ କରିଦେଲା । ଶେଷରେ ନିଜେ ବି ଆଉଟ୍ ହୋଇଗଲା" ହସି କହିଲା ଇନ୍ଦିରା ।

"ଗୁଡ୍,ଖୁବ୍ ମଜାକର, ଖେଳ । ତା ହେଲେ ସିନା ! " ସେ ଯିବାକୁ ଗୋଡ ବଢ଼େଇଲା । ତା' ପରେ କଣ ଭାବି ଅଟକି ଯାଇ ଇନ୍ଦିରାକୁ କହିଲା, "କେତେଜଣ ଭଦ୍ର ମହିଳାଙ୍କୁ ଡାକୁଛି ଇନ୍ଦିରା ଦେବୀ, ଆପଣଙ୍କ ଭରସାରେ । ଆପଣ ଟିକିଏ ଶୀଘ୍ର ଯିବେ । ଠିକ୍ ସଂଧ୍ୟାବେଳକୁ । "

"ଯିବି । "

"ତା ହେଲେ ମାଷ୍ଟର ମନୁ ! " ମନୁକୁ ସାଙ୍ଗରେ ନେଇ ଗାଡିରେ ବାହାରିଗଲା ସେ ।

ସଂଧ୍ୟାବେଳକୁ ଯାଇ ପହଞ୍ଚିଲା ଇନ୍ଦିରା, ସୁବ୍ରତକୁ ନେଇ । ତଳେ ଦେଖିଲା ସତ୍ୟବ୍ରତକୁ, ତା ନନା ସାଙ୍ଗରେ କଣ କଥାବାର୍ତ୍ତା କରୁଛି । ଦୁଇଟା ରୋଷେଇଆ କାମ କରୁଛନ୍ତି । ସନିଆ ଆଉ ମାଳୀ ମଧ୍ୟ ବ୍ୟସ୍ତ । ଇନ୍ଦିରାକୁ ଦେଖି ଆଗେଇ ଆସିଲା ସତ୍ୟବ୍ରତ, ''ଚାଲନ୍ତୁ ଉପରକୁ । ବସିବାର ବ୍ୟବସ୍ଥା ସେଠି । ''

ସୁବ୍ରତକୁ ନେଇ ଉଠିଲା ଇନ୍ଦିରା ଉପରକୁ । ତାକୁ ପୋଛି ପାଛି ପୋଷାକ ପିନ୍ଧେଇଲା । ସିଲ୍କର ସେରୱାନି, ଚୁଡ଼ିଦାର ପାଇଜାମା, ମୁଣ୍ଡରେ ଟୋପି । ନିଜର ସୁନା ହାରଟା ଖୋଲି ତା ବେକରେ ପିନ୍ଧେଇଦେଲା । ତା ମୁଣ୍ଡ କୁଣ୍ଡେଇ, ମୁହଁରେ ପାଉଡର ଓ ଦେହରେ ସେଣ୍ଟ ଦେଇସାରି ତାକୁ ଦେଖିଲା ଭଲ କରି ଆଲୁଅରେ । ତା'ପରେ ତା ଦି'ଗାଲରେ ଚୁମା ଖାଇ କହିଲା, ''ଯାଅ ଛୋଟା ପିଲ୍ଲ । ''

ସତ୍ୟବ୍ରତ ଯେ କେତେବେଳେ ଆସି ପଛରେ ଠିଆ ହୋଇଛି, ଇନ୍ଦିରା ବା ସୁବ୍ରତ କେହି ଦେଖି ନ ଥିଲେ । ତାକୁ ପ୍ରଥମ ଦେଖିଲା ଇନ୍ଦିରା । ହସି ପଚାରିଲା, ''ଦେଖନ୍ତୁତ ଏ ପିଲାଟିକୁ ଚିହ୍ନିପାରୁଛନ୍ତି ? ''

''ନା'', ପୁଅକୁ ଆଉଥରେ ଦେଖିଲା ସତ୍ୟବ୍ରତ । ତାପରେ କହିଲା, ''ଇନ୍ଦିରା ଦେବୀ, ମୁଁ ଥରେ ଆପଣଙ୍କୁ ଅତୁଳନୀୟା କହିଥିଲି । କଥାଟା ଯେ ସତ ଆପଣ ଆଉଥରେ ପ୍ରମାଣ କରିଦେଲେ । ମୋତେ ବିଶ୍ୱାସ କରନ୍ତୁ । ଆପଣଙ୍କ ରକମ ଝିଅ ମୁଁ ଏଇ ବତ୍ରିଶ ବର୍ଷ ଜୀବନରେ ଦେଖି ନ ଥିଲି ।''

''ଧନ୍ୟବାଦ । ଚାଲନ୍ତୁ ମୋତେ ବତେଇ ଦେବେ କ'ଣ କରିବାକୁ ହବ । ''

''ଆପଣଙ୍କ ଉପରେ ଗୋଟିଏ ଭାର । ମହିଳାମାନଙ୍କୁ ଆପଣ ମୋ ତରଫରୁ ଆବାହନ ଜଣେଇବେ । ସେମାନଙ୍କୁ ନେଇ ବସେଇବେ । ଏଇ ଆଉ କ'ଣ । ଘରର କର୍ତ୍ତ୍ରୀ ଥିଲେ ଯାହା କରିଥାନ୍ତେ । ''

''ମୋତେ ଅଫିସିଏଟ୍ କରିବାକୁ କହୁଛନ୍ତି ତ ? '' ହସିଲା ଇନ୍ଦିରା । ''ହେଲା ଏବେ । ''

''ଆପଣଙ୍କୁ ମୋର କିଛି କହିବାର ନାହିଁ । ଦୟାକରି ମୋତେ ଭୁଲ ବୁଝିବେ ନାହିଁ । ''

କଥାର ମୋଡ ବୁଲେଇ ଦବାକୁ ଇନ୍ଦିରା କହିଲା, ''ଚାଲନ୍ତୁ, କଉଠି ବସିବାର ଜାଗା ହୋଇଛି, ମୋତେ ଦେଖେଇ ଦେବେ । ''

ସତ୍ୟବ୍ରତ ଓ ଇନ୍ଦିରା ଆଗେଇ ଗଲେ । ଗୋଟାଏ ବଡ଼ ହଲ — ତଳେ ଗାଲିଚା ପଡ଼ିଛି । ବଡ଼ ବଡ଼ ଗେରଦା ତକିଆ ପଡ଼ିଛି ପାଞ୍ଚ ସାତୁଟା । ଝାଡ ଆଲୁଅ ଝୁଲୁଛି କଡ଼ିରୁ । ଗୋଟାଏ ପଟରେ ରହିଛି ଗୁଡାଏ ବାଦ୍ୟଯନ୍ତ୍ର । କାରପେଟର ମଝିରେ ରୂପା ଥାଳିରେ ସଜା ହୋଇଛି, ପାନ, ମଶଲା, ସିଗ୍ରେଟ; ଦିଆସିଲି ।

ସୁବ୍ରତ ବସିଛି ସେଠି ଗୋଟାଏ ତକିଆରେ ଠେସ ଦେଇ । ଏମାନଙ୍କୁ ଦେଖି ହସିଲା ।

ଇନ୍ଦିରା ସତ୍ୟବ୍ରତଙ୍କୁ ପଚାରିଲା, "ପୁରୁଷ ସ୍ତ୍ରୀ ଏକାଠି ବସିବେ ?"

"ସେଇଆ ତ ବ୍ୟବସ୍ଥା । ଗୋଟାଏ ପାଖରେ ମହିଳା ଅନ୍ୟ ପାଖରେ ପୁରୁଷ । ମଝିରେ ବସିବେ ସଂଗୀତଜ୍ଞ । ହବନି ଠିକ୍ ?"

"ହଁ । ହବନି କାହିଁକି ?"

"ମୁଁ ତାହେଲେ ତଳକୁ ଯାଉଛି । ଅତିଥି ଆସିଲେ ଉପରକୁ ପଠେଇବି ।"

"ଆଚ୍ଛା ।"

ଜଣେ ନିମନ୍ତ୍ରିତ ଆସିଲେ ତାଙ୍କୁ ସାଙ୍ଗରେ ନେଇ ଉପରକୁ ଆସେ ସତ୍ୟବ୍ରତ । ଇନ୍ଦିରା ସାଙ୍ଗରେ ପରିଚୟ କରିଦିଏ, "ଏ ଡକ୍ଟର ଇନ୍ଦିରା ଦେବୀ । ପଢ଼ିଶା । ମୋତେ ସାହାଯ୍ୟ କରୁଛନ୍ତି ।"

ଆସ୍ତେ ଆସ୍ତେ ସମସ୍ତେ ଆସିଗଲେ । ବେଶୀ ଲୋକ ନୁହନ୍ତି । ସାତ ଆଠଜଣ ପୁରୁଷ, ଚାରି ପାଞ୍ଚ ଜଣ ମହିଳା । ତା ଭିତରେ ତା ନାନୀ । ଅବନୀ ମହାନ୍ତିଙ୍କ ସ୍ତ୍ରୀ ସୁନନ୍ଦା ସାଙ୍ଗରେ ପରିଚୟ ହବାରୁ ଇନ୍ଦିରାକୁ ଟାଣି ନେଇଗଲା ସେ, "ଆରେ ଆପଣ ଇନ୍ଦିରା ମହାପାତ୍ର ?"

ହସି ହଁ କଲା ଇନ୍ଦିରା ।

"ମୁଁ ତ ଆପଣଙ୍କୁ ଦେଖିଛି, ଅନେକ ଥର, ଏଇ କଟକରେ ।"

"ହୋଇଥିବ । ମୁଁ ତ ଏଇଠୁ ପାଶ୍ କରିଛି ।"

"ଚୌଧୁରୀଙ୍କ ସାଙ୍ଗରେ ପରିଚୟ ହେଲା କିମିତି ?"

"ଇମିତି , ଏଠି ଥାନ୍ତି ତ । ଆମ ଘର ବି ଏଇଠି ପାଖରେ । ତା ଛଡ଼ା ସେ ଥିଲେ ମୋ ମାମୁଘର ଜମିଦାର ।" ଇଚ୍ଛାକରି ଇନ୍ଦିରା ସଂକ୍ଷିପ୍ତ କଲା ପରିଚୟର ଇତିହାସକୁ ।

"ବିଚାରୀ ଭାରି ଦୁଃଖୀ । ଆପଣ ତ ଜାଣିଥିବେ ସବୁ କଥା । ଏଇ ପୁଅଟି ଛଡା ତାଙ୍କର ଆଉ କେହି ନାହିଁ ।" ସୁନନ୍ଦା ସହାନୁଭୂତି ଜଣେଇଲା । ଇନ୍ଦିରା ମୁଣ୍ଡ ହଲେଇଲା, ସେ ଜାଣେ ।

"ଆପଣଙ୍କ ପ୍ରଶଂସାରେ କିନ୍ତୁ ଚୌଧୁରୀ ବିଭୋର । ଆଜି ସକାଳେ କହୁଥିଲେ । ଆଜିର ଏ ଖିଆ ଦିଆ ସମ୍ଭବ ହେଲା, କେବଳ ଆପଣଙ୍କ ଯୋଗୁ । ସୁବ୍ରତ ପରା ଆପଣଙ୍କୁ ପାଇ ବାପ ପାଖକୁ ଆସୁନି । ପିଲାଟା କିନ୍ତୁ ଭାରି ଭଲ ।"

"ହଁ ।"

ଆଉ କିଛି କଥା ନାହିଁ କହିବାର । ଦିଜଣ ଯାଇ ବସିଲେ ଘର ଭିତରେ । ଅତିଥି ସବୁ ବସିଛନ୍ତି ।

ସଙ୍ଗୀତ ଆରମ୍ଭ ହେଲା । ଜଣେ ଦାଢ଼ିବାଲା ଭଦ୍ରଲୋକ, ଖୁବ୍ ସମ୍ଭବ ମୁସଲମାନ, ତାନପୁରାରେ ସୁର ଦେଉଥାନ୍ତି । ତବଲଚି ବାନ୍ଧୁଛି ତବଲା ଗାୟକର ସୁର ସାଙ୍ଗରେ ।

ଜଣେ କିଏ ସାରେଙ୍ଗୀରେ ସୁର ସଂଯୋଗ କରୁଛନ୍ତି । ଆଳାପ ଆରମ୍ଭ କଲେ ସଂଗୀତଜ୍ଞ । ଭୀଷଣ ଗମ୍ଭୀର କଣ୍ଠ । ଜାଣେଟି ସେ ରାଗ ନାମ ? 'ଦରବାରୀ' । ଆଳାପର ଗାମ୍ଭୀର୍ଯ୍ୟରେ ଗମଗମ କଲା । ପଛକୁ ଉଠିଲା ମିଠା । ଉଃ, କି ମଧୁର ହୋଇଗଲା ସେଇ କଣ୍ଠ । ପ୍ରାୟ ଅଧଘଣ୍ଟାଏ ଗାଇ ସେ ଗୀତ ବନ୍ଦ କଲେ । ଏ ସଙ୍ଗୀତ ସଙ୍ଗରେ ପରିଚୟ ନାହିଁ ଇନ୍ଦିରାର । ତଥାପି ମନେହେଲା ତାର, ସୁରଟା ଘୁରଫେର ହେଉଛି ତା କାନରେ । ତା ପରେ ଉଠିଲେ ଜଣେ ପୌଢ଼ ଭଦ୍ରଲୋକ । ହାତଯୋଡି ଓଡ଼ିଆରେ କହିଲେ, ସେ ବୁଢ଼ା ହୋଇଗଲେଣି, ତଥାପି ଚେଷ୍ଟା କରିବେ । ସୁନନ୍ଦା ଇନ୍ଦିରାକୁ କହିଲା, ଏ ଭଦ୍ରଲୋକଙ୍କୁ ସେ ଦେଖିଛି । କଉଁ ରଜାଙ୍କ ଭାଇ ସେ । ଆରମ୍ଭ ହେଲା ହାଲୁକା ସଂଗୀତ — ଦାଦରା । କିନ୍ତୁ କି ଅପୂର୍ବ ସେ ରାଗିଣୀ, କି ମିଠା ଭାଷା । ଟିକିଏ ଟିକିଏ ବୁଝିଲା ଇନ୍ଦିରା ।

"ହେ ସାଓଁରିଆ, ତୁମେ କେତେ ନିଷ୍ଠୁର । ଆଜି ମୋ କୁଞ୍ଜକୁ ଆସିବ ବୋଲି କହିଲ । ମୁଁ ଦିନସାରା ଲାଗି କୁଞ୍ଜକୁ ସଜେଇଲି । ଶୁକ, ସାରି, ମୟୁର, ସମସ୍ତେ ତୁମ ଆଗମନକୁ ଅପେକ୍ଷା କରିଥିଲେ । ତୁମେ କିନ୍ତୁ ଆସିଲ ନାହିଁ । କଦମ୍ବକେଶର ଝରିଗଲା, କୁରୁବକ ଶୁଖିଗଲା । ତୁମ ପାଇଁ ଚାହିଁ ଚାହିଁ ମୁଁ ନିରାଶ ହେଲି । ଚନ୍ଦ୍ର ଅସ୍ତ ଗଲା, ତୁମେ ଆସିଲନି ହେ ନିଠୁର । " ଗୀତ ବନ୍ଦ ହେଲା । ଇନ୍ଦିରାର ମନ ବି ଆର୍ଦ୍ର ହେଲା ଏଇ ଗୋପବାଳାର ରୋଦନରେ ।

ଏଥର ପାଳି ପଡ଼ିଲା ସତ୍ୟବ୍ରତର । ବାକ୍ସ ଖୋଲି ବେହେଲା ବାହାର କଲା ସେ । ଛଡ଼ିଟାକୁ ମହମରେ ଘସିନେଲା । ତା ପରେ ଧୀରେ ଧୀରେ ଛଡ଼ି ଚଳେଇଲା ଯନ୍ତ୍ରରେ । ଆଳାପ ଆରମ୍ଭ କଲା ସେ । କିଏ ଜଣେ କହିଲା, "ଜୟ ଜୟନ୍ତୀ । "

ପ୍ରାୟ ପଇଁଚାଳିଶ ମିନିଟ ବଜେଇଲା ସତ୍ୟବ୍ରତ । ଘରସାରା ଲୋକ ବିମୁଗ୍ଧ । ବାଦ୍ୟ ବନ୍ଦହେଲା, କିନ୍ତୁ ତାର ସ୍ୱର ଲହରୀ ଖେଳି ବୁଲୁଛି ଘରସାରା । ପ୍ରତ୍ୟେକ ଶ୍ରୋତା ମନରେ । ଇନ୍ଦିରା ଇମିତି ଜଲସାକୁ କେବେ ଯାଇ ନ ଥିଲା । ଇମିତି ସଙ୍ଗୀତ ଶୁଣି ନ ଥିଲା । ତିନିଜଣଯାକ ଗୁଣୀ । କିନ୍ତୁ ତାର ମନେ ହେଲା ସତ୍ୟବ୍ରତ ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ । ସେମାନେ କଣ୍ଠରେ ଯାହା କରିପାରି ନଥିଲେ, ଯେ ଯନ୍ତ୍ରରେ ତାଠୁଁ ବେଶି କାମ ଦେଖେଇଲା । ଲୋକଟା କଣ ମ ? ଏତେ ଗୁଣ ଅଛି ଯାର, ଅଥଚ ବାହାରୁ ବୁଝିବାର ଉପାୟ ନାହିଁ । ଇନ୍ଦିରା ସତ୍ୟବ୍ରତ ପାଇଁ ଗର୍ବ ଅନୁଭବ କଲା । ସୁବ୍ରତ ଶୋଇଛି ତା କୋଡରେ ମୁଣ୍ଡ ଦେଇ । ବାପର ସଙ୍ଗୀତ ପୁଅ ଆଖିରେ ନିଦ ଆଣି ଦେଇଛି ।

ସମସ୍ତେ ଉଠିଲେ । ଖାଇବାକୁ ଯିବେ । ଇନ୍ଦିରା ସିମିତି ତଳକୁ ମୁହଁ କରି ରହିଲା । ଶୋଇଛି ପିଲାଟା ଦିନସାରା ଟିକିଏ ବିଶ୍ରାମ ନେଇନି । କ'ଣ କରିବ ସେ ? ଉଠିବ କିମିତି । ଅବସ୍ଥା ଦେଖି ସତ୍ୟବ୍ରତ ଆଗେଇ ଆସିଲା । ପଚାରିଲା, "ସୁବ୍ରତ କ'ଣ ଶୋଇ ପଡ଼ିଛି ?"

ବାପର କଣ୍ଠସ୍ୱର ଶୁଣି ଆଖି ଖୋଲିଲା ସୁବ୍ରତ । ଅନେଇଲା ଚାରି କଡ଼କୁ । ଉଠି ବସିଲା ଆଖିମଳି ମଳି, ''ଦେଖିଲ ଆଣ୍ଟି, ମୁଁ ଶୋଇ ପଡ଼ିଛି କେତେବେଳେ ? '' ସେ ଉଠି ଠିଆ ହେଲା ।

''କିରେ, ଚାଲ ଖାଇବୁ ।'' ସତ୍ୟବ୍ରତ ଡାକିଲା ତାକୁ ।

ସେ କିନ୍ତୁ ଇନ୍ଦିରା ପାଖକୁ ଘୁଞ୍ଚିଆସି ଠିଆହେଲା ତା ଦେହକୁ ଲାଗି । ତାର ଦୁଇ କାନ୍ଧରେ ହାତ ରଖି ଇନ୍ଦିରା କହିଲା ।

'' ସେ ଥାଉ ମୋ ସାଙ୍ଗରେ ଖାଇବ ।''

ସତ୍ୟବ୍ରତ ବାକ୍ୟବ୍ୟୟ ନ କରି ଚାଲିଗଲା ।

ଖାଇବା ପାଇଁ ଦୁଇଟା ଘରେ ବ୍ୟବସ୍ଥା ହୋଇଛି । ଗୋଟାକରେ ପୁରୁଷ, ଅନ୍ୟଟାରେ ମହିଳାମାନେ ବସିବେ । ଇନ୍ଦିରା ସୁବ୍ରତର ଆଖି ମୁହଁ ଧୋଇ ପୋଛିଦେଲା । ଘର ଭିତରକୁ ନେଇଯାଇ ତାକୁ ତା ପାଖରେ ବସେଇଲା । ଚୌଧୁରୀ ଘର ଭୋଜି । ଖାଇବାକୁ ଦେବାରେ ଏମାନଙ୍କର ନାମ ଦିଗନ୍ତ ପ୍ରସାରୀ । ବହୁ ପ୍ରକାର ଅନ୍ନବ୍ୟଞ୍ଜନ, ମିଷ୍ଟାନ୍ନ । ଗାଲିଚା ଆସନ ସମସ୍ତଙ୍କ ପାଇଁ । ସମସ୍ତଙ୍କ ଆଗରେ କଂସା, ଥାଳି, ଗିନା, ଗିଲାସ । ଏତେ ବାସନ ଏଇ ଘରେ ଥିଲା !

ସୁବ୍ରତକୁ ଖୋଇ ଦଉଥାଏ ଇନ୍ଦିରା । ମାଛ ଖାଇପାରେନି ସୁବ୍ରତ କଣ୍ଟା ଡରରେ । ପୁରିରେ ମାଂସ ଦେଇ ଦେଲାରୁ ଖାଇଲା । ମିଠା ଖାଇଲା ଗୋଟାଏ ଅଧେ । ଆଉ କିଛି ଛୁଇଁଲା ନାହିଁ ।

ନାନୀ କହିଲା, ''ସୁବ୍ରତକୁ ତୁ ଯେମିତି ଗେହ୍ଲା କଲୁଣି, ତତେ ଛାଡ଼ି ସେ କିମିତି ରହିବ ଲୋ ଚୁନି ।''

'' ସେ କ'ଣ ଛାଡ଼ିବକି ? '' ସୁନନ୍ଦା ମୁରୁକି ହସି ଟିପ୍‌ପଣୀ କାଟିଲା ।

''ଓ ଆଣ୍ଟି, ଆଉ ନା । ପେଟ ଭର୍ତ୍ତି ହୋଇଗଲାଣି । ''

ସୁବ୍ରତ ଇନ୍ଦିରା ଦେହକୁ ଆଉଜି ବସିଲା । ଗିଲାସରୁ ପାଣି ନେଇ ତା ପାଟି ଧୋଇ ଦେଲା ଇନ୍ଦିରା । ତା' ପରେ ରୁମାଲରେ ମୁହଁ ପୋଛି ଦେଇ ବାଁ ହାତରେ ତାକୁ କୋଡକୁ ଆଉଜେଇ ଆଣିଲା । ସୁବ୍ରତ ସେଇଠି ତା କୋଡରେ ମୁଣ୍ଡ ରଖି ଶୋଇ ପଡ଼ିଲା । ଇନ୍ଦିରା ବସି ରହିଲା ସିମିତି । ଅପେକ୍ଷା କଲା ସମସ୍ତଙ୍କ ଖିଆ ସରିବାକୁ । ତା ନାନୀ ଦେଖିଲା ସବୁ । କହିଲା, ''କିଛି ଖାଇଲୁନି ଯେ ?''

''ଖାଇବେ କିମିତି ସେ ? ପିଲାଟା ଶୋଇଚି କୋଡରେ । '' ଏଥର ମଧ ସୁନନ୍ଦା । ହସିଲା ଇନ୍ଦିରା । ବାଁ ହାତରେ ସୁବ୍ରତର କାନ ପାଖର ବାଳକୁ ଠିକ୍ କରିଦେଲା ।

ଖିଆ ସରିଲାରୁ ସମସ୍ତେ ଉଠିଲେ । ଇନ୍ଦିରା ସୁବ୍ରତକୁ ଉଠେଇ ନେଲା କୋଡକୁ । ତା' ପରେ ତାକୁ ନେଇଗଲା ତା ଶୋଇବା ଘରକୁ । ବିଛଣାରେ ଶୋଇ ଦେଲାରୁ ଚାହିଁଲା

ସୁବ୍ରତ, "ଆଣ୍ଟି, ମୁଁ ଏଠି ଶୋଇବିନି ।" ଦୁଇ ହାତରେ ଧଇଲା ସୁବ୍ରତ ତାଙ୍କୁ । ଇନ୍ଦିରା ବୁଝିଲା ତାର ମତଲବ । କହିଲା, " ତାହେଲେ ଚାଲ ଆମ ଘରକୁ ।" ତଳେ ଠିଆ କଲା ସେ ସୁବ୍ରତକୁ । ନିଦରେ ଢଳମଳ ହେଉଥାଏ ସେ । ପୁଣି ତାକୁ କୋଡକୁ ଟେକି ନେଲା ଇନ୍ଦିରା । ଧୀରେ ଧୀରେ ସିଡ଼ିରେ ଓହ୍ଲେଇ, କାହାରିକି କିଛି ନକହି ଚାଲି ଆସିଲା ଘରକୁ । ତା ବୋଉ ଦେଖିଲେ, ଇନ୍ଦିରା ଏକା ଫେରିଲା, ନିଦ୍ରିତ ସୁବ୍ରତକୁ କାନ୍ଧରେ ପକେଇ । ନିଜ ଶୋଇବା ଘରକୁ ପଶି ତାକୁ ବିଛଣାରେ ଶୋଇଦେଇ ତାରି ପାଖରେ ଶୋଇ ପଡ଼ିଲା । ଆରାମରେ ସୁବ୍ରତ ଗୋଟାଏ ହାତ ତା ଉପରେ ଲଦି ନିଘୋଡ ନିଦରେ ଶୋଇ ପଡ଼ିଲା ।

ଦୌଡ଼ି ଦୌଡ଼ି ଆସିଲା ମନୁ । ବୋଉକୁ ପଚାରିଲା, "ଚୁନିନାନୀ ଆସିଛି ?"

ବୋଉ 'ହଁ' କଲାରୁ ପଚାରିଲା ସେ, "ସୁବ୍ରତ ?"

"ହଁ । ସେ ବି'ଜଣ ଶୋଇଛନ୍ତି ଘରେ । କାହିଁକି ?"

କିଛି ଉତ୍ତର ନ ଦେଇ ପୁଣି ଦୌଡ଼ି ଚାଲିଗଲା ମନୁ । ତା ବୋଉ କିଛି ବୁଝିପାରିଲେ ନାହିଁ ।

ପନ୍ଦର ମିନିଟ୍ ପରେ ଫେରିଆସିଲା ମନୁ, ତାଙ୍କ ବଡ଼ଝିଅ କୁନି ଏବଂ ଜଣେ ପୂଝାରୀ । ଗୋଟାଏ ପରାତରେ କ'ଣ ସବୁ ଆଣିଛି ସେ । ବଡ଼ ଝିଅ ପାଖରୁ ବୁଝିଲେ ବୋଉ ସବୁ କଥା । ନିଦ୍ରିତ ସୁବ୍ରତକୁ କାନ୍ଧରେ ପକେଇ ଇନ୍ଦିରା ଚାଲି ଆସିଛି । କିଛି ଖାଇନି ସେ । ତା ପାଇଁ ଚୌଧୁରୀ ପଠେଇ ଦେଇଛନ୍ତି ତାଟ ।

କୁନି ପଶିଗଲା ଇନ୍ଦିରାର ଶୋଇବା ଘରକୁ । ଆଲୁଅ ଜାଳିଲା । ଚମକି ପଡ଼ି ଇନ୍ଦିରା କହିଲା । "କିଏ ?"

"ମୁଁ ।"

ଇନ୍ଦିରା ଦେଖିଲା ତା ନାନୀ । କୁନି ଦେଖିଲା ମଶାରି ଭିତରେ ସୁବ୍ରତ ଶୋଇଛି ଇନ୍ଦିରା ପାଖରେ । ବିସ୍ମିତ ହେଲା ସେ ! ଏଇ ପିଲାଟା ଏତେ ଆପଣାର ହୋଇ ଯାଇଛି ଚୁନିର ?

ଆଶ୍ଚର୍ଯ୍ୟ ! ଏଇ ଚୁନି, ଟିକିଏ ଅପରିଷ୍କାର ଅପରିଚ୍ଛନ୍ନ ଦେଖିଲେ ଯେ ନାକ ଟେକେ, ତା ବିଛଣାରେ ବସିଲେ ଯେ ବିରକ୍ତ ହୁଏ , ସେ ପରର ଗୋଟାଏ ଆଠବର୍ଷର ପୁଅକୁ ପାଖରେ ନେଇ ଶୋଇଛି । ଇନ୍ଦିରା କହିଲା, "ଆଲୁଅଟା ଲିଭେଇ ଦେ ନାନୀ । ସୁବ୍ରତ ଉଠିବ ।"

ଆଲୁଅ ଲିଭିଗଲା । ପିଣ୍ଡାର ଆଲୁଅ ପଡୁଥାଏ ଝରକା ବାଟେ ।

ନାନୀ ପଚାରିଲା, " ନ ଖାଇ ଚାଲି ଆସିଲୁ ଯେ ?"

"ଖା'ନ୍ତି କିମିତି ? ତୁତ ଦେଖିଛୁ ସବୁ ।"

"କିନ୍ତୁ କାହିଁକି ? ସୁବ୍ରତ କିଏ ତୋର ?"

"କେହିନା ।"

"ତା ହେଲେ ଏତେ ଆଦର କାହିଁକି ପର ପିଲାକୁ ?"

ଇନ୍ଦିରା ଉତ୍ତର ଦେଲା ନାହିଁ ।

"କିଲୋ କହୁନୁ କାହିଁକି ?"

"ତୁ ପିଣ୍ଡାକୁ ଯା ନାନୀ, ସେ ଉଠିବ । ମୁଁ ଯାଉଛି ।"

ଆସ୍ତେ ଆସ୍ତେ ଉଠିଲା ଇନ୍ଦିରା । ସୁବ୍ରତ ଶୋଇଛି । ତକିଆଟାକୁ ଧୀରେ ଆଣି ରଖିଲା ସୁବ୍ରତ ପାଖରେ । ତା ହାତ ଟେକିଦେଲା ତକିଆ ଉପରକୁ । ସୁବ୍ରତ ଟିକିଏ ହଲଚଲ ହେଲା, ତା ପରେ ଶୋଇପଡ଼ିଲା । ନିଃଶବ୍ଦରେ ମଶାରି ଭିତରୁ ବାହାରି ଆସି ପିଣ୍ଡାରେ ଠିଆ ହେଲା ଇନ୍ଦିରା ।

"ପୁଅ ଶୋଇପଡ଼ିଲା ?" ବୋଉ ପଚାରିଲେ ।

"କାହା ପୁଅ ସେ ବୋଉ ?" କୁନିର ପ୍ରଶ୍ନ ।

"ସୁବ୍ରତ ? ଚୌଧୁରୀଙ୍କ ପୁଅ ।"

"ଚୁନିର ସେ କିଏ ।"

"ଚୁନିର ଆଉ କିଏ ?" ପିଲାଟର ମା ମାଉସୀ କେହି କଉଠି ନାହିଁ । ଚୁନି ପାଖରେ ଭାରି ଅଲିଅଳ ହେଉଛି । ଦିଦିନ ହେଲା ତ ସେ ସବୁବେଳେ ଆମ ଘରେ । ବାପ ପାଖକୁ ବି ଯାଉନି ।"

"ଓ ! ପରପୁଅ ପାଇଁ ଏତେ ଦରଦ ! କାହିଁକି ମନରେ କିଛି କଳ୍ପନା ଅଛି କି, ଚୌଧୁରୀଙ୍କୁ ଜୋଇଁ କରିବାର ?"

"ନାନୀ !" ଗର୍ଜି ଉଠିଲା ଇନ୍ଦିରା ।

"ରାଗୁଛୁ ଯେ ? ସତ କଥା କହିଲି ବୋଲି ?"

"ନା, ତୁ ମିଛ କହୁଛୁ । ମିଛରେ ତିଆରି କରୁଛୁ କଥାଟା ।" ଇନ୍ଦିରା ରୁକ୍ଷା ।

"ମୁଁ ମିଛରେ ତିଆରି କରୁଛି ନା ? ହଉ ଦେଖିବା କଉଠିକା ପାଣି କଉଠିକି ଯାଉଛି ?"

"କିଲୋ ଦି ଭଉଣୀ କଳି ଲାଗିବ ନା ଏଇ ରାତି ଦଶଟାବେଳେ ?" ବୋଉ କହିଲେ — "ଚୁନି ତୁ ଖାଇଦେ ମା ଚୌଧୁରୀ ପଠେଇ ଦେଇଛନ୍ତି ।"

"କିଛି ଖାଇବାକୁ ମନ ହଉନି ବୋଉ ।" ଗେହ୍ଲେଇ ହେଲା ଇନ୍ଦିରା ।

" ପେଟ ତ ପୂରି ରହିଛି ପୁତ୍ର ସ୍ନେହରେ । ଭୋକ କାହିଁ ଯେ ଖାଇବ !" ନାନୀ ଛାଡ଼ିଲା ନାହିଁ । ଇନ୍ଦିରା ତା ଆଡକୁ ଗୋଟାଏ ଅଗ୍ନିଦୃଷ୍ଟି ପକେଇ ଗାଧୁଆ ଘରକୁ ଚାଲିଗଲା ।

ଫେରିଲା ବେଳେ ଶୁଣିଲା, ବୋଉ କହୁଛି, "ଏ ତ ସୌଭାଗ୍ୟର କଥା ହବଲୋ କୁନି । ଏଥିରେ ଲାଜର କ'ଣ ଅଛି । ଦିଶନ୍ତା ବି ସୁନ୍ଦର । ତୁ ତ ଜାଣୁନି । ମୁଁ ଦେଖିଛି ଏଇ

ଚୌଧୁରୀ ଘରକୁ । କଣ ନ ଥିଲା ତାଙ୍କର ?  କ'ଣ ନକରୁଥିଲେ ସେମାନେ ! '' ଇନ୍ଦିରା ଆସି ଠିଆ ହେଲା । ମୁହଁ ପୋଛିଲା । ଅନେଇଲା  ପରାତକୁ । ଢ଼କା ଟେକି କହିଲା, ''ଆରେ ବାବା, ଏତେ ? ଏକୁ ଖାଇବ କିଏ ?  ବୋଉ, ଦେଲୁ ମୋତେ ଅଳ୍ପ ଟିକିଏ ? ''

ବୋଉ ଘରୁ ଥାଳି ଆଣି ବାଢ଼ିଦେଲେ, ଇନ୍ଦିରା ଖାଇ ବସିଲା । ନାନୀକୁ ଅନେଇଲା ସେ ।

''କଣ କିଲୋ ? '' ନାନୀ କହିଲା, ''ମତେ କ'ଣ ଦେଖୁଛୁ ?   ଚୌଧୁରୀଘର ବୋହୂ ହବୁ ? ହଁ । ''

''ତୋର ଈର୍ଷା ହଉଛି । '' ଇନ୍ଦିରା ଦଂଶନ କଲା ନାନୀକୁ ।

''ନା ମୋର  ଈର୍ଷା  କାହିଁକି ହବ ? ''

'' ତା ହେଲେ,  ଫୋଡୁଛୁ କାହିଁକି ମୋତେ ? ''

ହସି ପକେଇଲା କୁନି, ''ଫୋଡ଼ିଲି  କଉଠି ଲୋ କଳିହୁଡି ? ବାହା ନ ହୋଇ ପୁଅ ପାଇ  ଯଉ ଆଦର କରୁଛୁ , ଲୋକେ କହିବେନି । ସେଇ ସୁନନ୍ଦା ତ  ଶୁଣି ହସି ହସି ଗଡିଗଲା ।''

''ହସୁ  । କିଏ ହସିବ ବୋଲି  ମୁଁ ସୁବ୍ରତକୁ ଛାଡ଼ି ଦେଇ ଆସିଥାନ୍ତି ସେଠି ? ସେ ପିଲାଟା ଯେ କ'ଣ ତୁ ତ ଜାଣୁନି? ସେଥିଲାଗି ସୁନନ୍ଦାର  ହସଟା ତୋତେ ବାଧିଲା । ''

ବୋଉ କହିଲେ, ''ଚୁନିକୁ ତ ମିନିଟିଏ ଛାଡୁନି, ଆସିଲା ଦିନୁ ।''

ଇନ୍ଦିରା ଖାଇସାରି ହାତ ଧୋଉଥାଏ, ହୃଷୀକେଶ ଆସିଲେ । ନାନୀ ଚାଲିଗଲା ତାଙ୍କ  ସାଙ୍ଗରେ । ଗଲାବେଳେ ଡାକିଲା, ''ଯିବୁ ଲୋ ଚୁନି, ଆମ ଘରକୁ । ''

'' ଯିବି, ସୁବ୍ରତ ଯାଉ । ''

ତହିଁ ଆରଦିନ ସତ୍ୟବ୍ରତ ଗାଡିରେ ସୁବ୍ରତ, ଇନ୍ଦିରା, ତା ବୋଉ, ମନୁ ସମସ୍ତେ ଗଲେ ଦେବୀ ଦେଖି । ସବୁ ମେଢ଼ ଦେଖିଲା ସୁବ୍ରତ ଗଳିକନ୍ଦି  ବୁଲିବୁଲି । ସନିଆ ଗାଡି ଚଳଉଥାଏ । ତାକୁ ବରାତ କରୁଥାଏ ସତ୍ୟବ୍ରତ ।  ''ଏଇ, ଏଠି ରଖ, ଏଠି ମେଢ଼ ଅଛି । ଏଇ, ସେଠିକୁ ନେଇଚାଲ । '' ବାଟସାରା ଅଟକେଉଥାଏ ।  ଗାଡ଼ି ଫେରିଲା ବେଳକୁ ପାଞ୍ଚଟା ବାଜିଗଲା ।

ପରଦିନ  ଅନୁଗୁଳ ଯିବାର କଥା । ପ୍ରାୟ ନ'ଟା ବେଳକୁ ଗଳି ମୁଣ୍ଡରେ ହର୍ଣ୍ଣ ବାଜିଲା । ସନିଆ ଦଉଡି ଆସିଲା ସାନବାବୁଙ୍କୁ ନବାକୁ । ପିଣ୍ଡାରେ ଇନ୍ଦିରାର ହାତଧରି ଠିଆ ହୋଇଥାଏ  ସୁବ୍ରତ । ପୁରା ସାହେବି ପୋଷାକ, ଟୋପି ପର୍ଯ୍ୟନ୍ତ । ଓହ୍ଲେଇ ପଡ଼ିଲେ ତଳକୁ ଦିଇଣ । ସୁବ୍ରତ ମୁହଁରେ କଥା ନାହିଁ । ଆଖି ଦି'ଟା ତାର ସଜଳ । ଖାଲି ଅନଉଥାଏ ସେ ଇନ୍ଦିରା ମୁହଁକୁ । ''ଆଣ୍ଟି,  ହାଉ ଆଇ ହେଟ୍ ଟୁ ଲିଭ୍ ଇଉ । ''

ଗାଡି ପାଖରେ ପହଞ୍ଚିଲେ ଦୁଇଜଣ ! ସତ୍ୟବ୍ରତ  ବସିଛି ଚାଳକ ହୋଇ । ଡାକିଲା ସେ, ''କାମ୍ଅନ୍ । ଷ୍ଟେପ୍ ଇନ୍ ସୁବ୍ରତ । ''

ଶେଷଥର ପାଇଁ ଇନ୍ଦିରା ମୁହଁକୁ ଚାହିଁଲା ସୁବ୍ରତ । ତା କୋଡରେ ମୁହଁ ଗୁଞ୍ଜି କାନ୍ଦି ପକେଇଲା । ଲୁଗା କାନିରେ ତା ଲୁହ ପୋଛି ତାର କପାଳରେ ଗୋଟାଏ ଚୁମା ଦେଲା ଇନ୍ଦିରା । ତା ଆଖିରୁ ବି ବୋହି ଯାଉଥାଏ ଲୁହ ଦୁଇଧାର ହୋଇ । ସୁବ୍ରତକୁ କହିଲା ସେ, ''ଯାଅ, ଗାଡିରେ ବସ ।''

ସୁବ୍ରତ ବସିଲାରୁ ଗାଡି ଷ୍ଟାର୍ଟ କଲା ସତ୍ୟବ୍ରତ । ଚାଲିଲା ଗାଡି । ''ଆଣ୍ଟି, ଓ ଆଣ୍ଟି,''ଆର୍ତ୍ତ ଚିତ୍କାର କରି ଉଠିଲା ସୁବ୍ରତ । ସତ୍ୟବ୍ରତ ଦେଖିଲା, କାନିଟାକୁ ମୁହଁରେ ଗୁଞ୍ଜି ତରତର ହୋଇ ଗଳି ଭିତରକୁ ପଶିଗଲା ଇନ୍ଦିରା ।

## ଚଉଦ

ସକାଳୁ ବୋଉକୁ କହିଲା ଇନ୍ଦିରା, ''ସୁବ୍ରତ ଆଜି ଫେରିଯିବ ସ୍କୁଲକୁ । ଏଠିକି ଆସିବ ବୋଲି ଲେଖିଥିଲା । ତା ପାଇଁ କ'ଣ ପିଠା କରିବୁ ପରା ?''

''ହଁ ଲୋ ଚୁନି, ମୁଁ ଭୁଲି ଯାଇଥିଲି । ମୁଁ ଯାଉଛି ମନୁକୁ ବଜାର ପଠେଇବି । ସେ କେତେବେଳେ ଆସିବ ? ତା ଗାଡି କେତେବେଳେ ?''

''ଗାଡି ରାତିରେ । ସେ କେତେବେଳେ ଆସିବ ମୁଁ କିମିତି କହିବି ? ତୁ କରିଥା, ଆସିଲେ ଖାଇବ ।''

ବୋଉ ଚାଲିଗଲେ ।

ସୁବ୍ରତ ଅନୁଗୁଳ ଯାଇ ଚିଠି ଲେଖିଛି ତାକୁ — ''ଆଣ୍ଟି, ତୁମକୁ ଛାଡ଼ି ଆସି ମୋତେ ମୋଟେ ଭଲ ଲାଗୁନି । ବାପାଙ୍କ ମନ ବି ଭଲ ନାହିଁ । ମୁଁ ଅଠର ତାରିଖ ଦିନ ଫେରିବି ସ୍କୁଲକୁ । ତୁମ ପାଖକୁ ଯିବି । ଆଣ୍ଟି, ତୁମେ ଜାଣ, ତୁମ ପାଇଁ ରାତିରେ ଶୋଇ ଶୋଇ ମୁଁ କାନ୍ଦେ । ତୁମେ ମୋତେ ଭୁଲି ଯିବନି ଆଣ୍ଟି । ଚିଠି ଦବ ।''

ଇନ୍ଦିରା ତାର ଉତ୍ତର ଦେଇଛି — ''ତୁମେ ରାତିରେ କାନ୍ଦିବ ନାହିଁ । ଯଦି କାନ୍ଦ ଆଣ୍ଟି ମରିଯିବ । ତାକୁ ଆଉ ପାଇବନି । ଯଦି ସୁନାପିଲା ହୁଅ, ଖୁସିରେ ଖେଳିବ, ବୁଲିବ, ପଢ଼ିବ । ମଝିରେ ମଝିରେ ଆଣ୍ଟିକୁ ମନେ ପକେଇବ । ତୁମେ ତ ଆସୁଛ ଶୀଘ୍ର । ମୁଁ ଅନେଇ ରହିଛି ଅଠର ତାରିଖକୁ ।''

ସଂଧ୍ୟା ହୋଇଗଲା, ସତ୍ୟବ୍ରତ କିମ୍ବା ସୁବ୍ରତର ଦେଖା ନାହିଁ । ମନୁକୁ ତିନିଥର ପଠେଇ ଖବର ନେଲାଣି ଇନ୍ଦିରା । ମାଲି କିଛି ଜାଣେନି । ଅସ୍ଥିର ହୋଇ ଉଠିଲା ଇନ୍ଦିରା । ତା ବୋଉ ଥରକୁ ଥର ପଚାରୁଛନ୍ତି ''କ'ଣ କିଲୋ ?''

ସଂଧ୍ୟା ପରେ ସେ ନନାକୁ କହିଲା ସବୁ କଥା । ଚିରରଞ୍ଜନ ରାଜି ହେଲା ଷ୍ଟେସନ ଯିବାକୁ । ସୁବ୍ରତର ଗାଡି ନ'ଟା ବେଳେ । କିନ୍ତୁ ସାତଟା ବାଜୁଣୁ ନ ବାଜୁଣୁ, ଇନ୍ଦିରା ଚିରରଞ୍ଜନକୁ ପଠେଇଲା ଷ୍ଟେସନକୁ । ତା' ପରେ ଅଧୀର ଆଗ୍ରହରେ ଘର ଦୁଆର ହେଲା । ତା ବୋଉ ବୁଝିଲେ — ଝିଅର ଭାରି ମମତା ସେଇ ପିଲାଟା ଉପରେ ।

ରାତି ଦଶଟା ବେଳକୁ ଫେରିଲା ଚିରରଞ୍ଜନ । ତାକୁ ଦାଣ୍ଡ ଦୁଆରେ ଅଟକେଇ ପଚାରିଲା ଇନ୍ଦିରା, ''କ'ଣ ଖବର ନନା ? ''

''ଖବର ଭଲ । ସୁବ୍ରତ ଚାଲିଗଲା ମେଲରେ , ରାୟପୁର । ସେମାନଙ୍କ ଗାଡି ବାଟରେ ଖରାପ ହୋଇଥିଲା । ଛ ଘଣ୍ଟା ଡେରିରେ କଟକ ପହଞ୍ଚିଲେ । ଭାଗ୍ୟ ଭଲ, ଗାଡି ଆସିବା ଆଗରୁ ପହଞ୍ଚିଛନ୍ତି । ''

''ଆଉ ସୁବ୍ରତ କ'ଣ କହୁଥିଲା ? ''

''ଖୋଜୁଥିଲା ତୋତେ । ପଚାରିଲା — ଆପ୍ପି ଆସିନାହାନ୍ତି ? ମୁଁ ମନା କଲାରୁ ମୁହଁଟି ଶୁଖେଇ ଦେଲା । ''

''ଆଉ ଚୌଧୁରୀ ? କୁଆଡେ ଗଲେ ସେ ? '' ବୋଉ ପଚାରିଲେ ।

'' ସେ ଫେରିଗଲେ ଅନୁଗୁଳ । ''

''ଏଇ ରାତିରେ ? ''

''ହଁ । ''

ଇନ୍ଦିରା ଶୁଣିକି ବି ଶୁଣୁ ନ ଥାଏ । ଚୁପ୍‌ଚାପ୍ ଯାଇ ବିଛଣାରେ ଶୋଇଲା ସେ, ଆଲୁଅ ଲିଭେଇ ଦେଇ । ବୋଉ ଖାଇବାକୁ ଡାକିଲେ, ମନା କଲା । ଦେହ ଭଲ ଲାଗୁନି ।

ତହିଁ ଆରଦିନ ଡାକରେ ଚିଠି ପାଇଲା ଇନ୍ଦିରା, ଛୁଟି ପରେ ସେ ଅବସ୍ଥାପିତ ହୋଇଛି ଅନୁଗୁଳ ଡାକ୍ତରଖାନାରେ । ଖୁସି ହେଲା । ଘରେ ସମସ୍ତଙ୍କୁ କହିଲା । ତିନିଦିନ ପରେ ଜଏନିଂ । ସତ୍ୟବ୍ରତକୁ ଚିଠି ଦେଲା ସେ ଏ ଖବର ଦେଇ । ଲେଖିଲା, ଅମୁକ ତାରିଖ ଦିନ ସକାଳ ଦଶଟା ବେଳେ ସେ ମେରାମୁଣ୍ଡଳି ଷ୍ଟେସନରେ ଓହ୍ଲେଇବ । ତା ବୋଉ ଓ ମନୁ ସାଙ୍ଗରେ ଯାଇ ପାରନ୍ତି ।

ଚିଠିକୁ ଏକ୍‌ସପ୍ରେସ କରି ନିଜେ ଡାକଘରେ ପକେଇ ଦେଇ ଆସିଲା ।

ସତ୍ୟବ୍ରତ କଟକରୁ ଫେରି ଶୋଇଛି ବିଛଣାରେ । ପୁଅକୁ ଗାଡିରେ ଚଢ଼େଇ ଦେଇ ଏକା ନିଶ୍ୱାସକେ ଫେରିଛି ଅନୁଗୁଳ । ସେଇ ରାତିରୁ ଆରମ୍ଭ କରିଛି ମଦ୍ୟପାନ । ଦିନେ, ଦୁଇଦିନ, ତିନିଦିନ ହେଲା ଅର୍ଦ୍ଧଚେତନ ଅବସ୍ଥାରେ ରହିଛି । ଗାଧୋଇ ନାହିଁ, ଖାଇନାହିଁ ।

କେବଳ ପିଇଛି । ତା ଶୋଇବା ଘର ସାରା ଗଡ଼ୁଛି ବୋତଲ — ହୁଇସ୍କି, ବ୍ରାଣ୍ଡି, ରାମ୍, ଜୀନ୍, କେତେ ଆକାରର, କେତେ ପ୍ରକାରର । କେହି ଏ ଘରକୁ ଡରରେ ପଶୁ ନାହାନ୍ତି ।

ସତ୍ୟବ୍ରତ ଭଳି ଗୋଟିଏ ସୁସ୍ଥ ସବଳ ଶିକ୍ଷାମନର ଗୋଟିଏ ଭୀଷଣ ଦୁର୍ବଳତା ଅଛି । ମନ ଖରାପ ହେଲେ, ତାର ଏ ରୋଗ ବାହାରେ । ଦୁଇ ତିନିଦିନ ଖାଲି ମଦପିଇ ପଡ଼ିରହେ । ତା' ପରେ ଧୀରେ ଧୀରେ ସବୁ ଠିକ୍ ହୋଇଯାଏ । ପୁଣି ଫେରି ଆସେ ତାର ସ୍ୱାଭାବିକ ଅବସ୍ଥାକୁ । ପୁଣି ଆରମ୍ଭ କରେ କାମ — ପୁଣି ଛବି ଆଙ୍କେ, ବେହେଲା ବଜାଏ ।

ପୃଥ୍ୱୀକୁ ଗାଡ଼ିରେ ଉଠେଇ ଦବାକୁ ଯାଇ ବାଟରେ ଖରାପ ହେଲା ତାର ଲେଣ୍ଡରୋଭାର । ଇନ୍ଦିରା ସାଙ୍ଗରେ ତାର ଦେଖା ହେଲା ନାହିଁ । ପୃଥ୍ୱୀ ବି ଖୋଜିଲା ଇନ୍ଦିରାକୁ ଷ୍ଟେସନରେ । ମନ କଷ୍ଟ କଲା ସୁବ୍ରତ ଆଣ୍ଟିକୁ ନ ପାଇ । ଫେରିଲାବେଳେ ସତ୍ୟବ୍ରତ କିଣିଲା ଦୁଇଶହ ଟଙ୍କାର ମଦ । ତାକୁଇ ପିଇଛି ସେ ଗଲା ତିନିଦିନ ଧରି । ଧୀରେ ଧୀରେ ଫେରି ପାଉଛି ତାର ଚୈତନ୍ୟକୁ ।

ଘଡ଼ିରେ ଦମ ଦେବାକୁ ଯାଇ ଦେଖିଲା ଗୋଟାଏ ଲଫାପା ଥୁଆ ହୋଇଛି । ଚିହ୍ନିଲା, ଇନ୍ଦିରାର ଅକ୍ଷର । ତାରିଖ ଦେଖିଲା ଡାକଘର ମୋହରରେ । କାଲି ସକାଳୁ ଚିଠି ଆସିଛି । ଲଫାପା ଖୋଲି ପଢ଼ିଲା । ଇନ୍ଦିରା ଆସୁଛି ତା ମା ଓ ଭାଇକୁ ନେଇ । ଅନୁଗୁଳ ଡାକ୍ତରଖାନାରେ ରହିବ । ତାରିଖଟା ଦେଖି ଚମକି ପଡ଼ିଲା । ତାର ନିଶା ଛାଡ଼ିଗଲା ।

ଡାକିଲା ସନିଆକୁ ।

ସନିଆ ଦଉଡ଼ିଆସିଲା ।

"ଇନ୍ଦିରା ଆସୁଛନ୍ତି ସକାଳ ଗାଡ଼ିରେ । ଗାଡ଼ି ନେଇଯା ମେରାମୁଣ୍ଡଳି । ଘଣ୍ଟାଏ ସମୟ ଅଛି । ଏକୋଇଶ ମାଇଲ ବାଟ — ପହଞ୍ଚି ପାରିବୁନି ?"

"ଆଜ୍ଞା, ଅଧଘଣ୍ଟାରେ ନଗେଇ ଦେବି ଗାଡ଼ି ଷ୍ଟେସନରେ ।"

"ତେଲ ଅଛି ?"

"ହଁ, ଟାଙ୍କି ଫୁଲ୍ କରି ଦେଇଛି ।"

"ତା ହେଲେ ଜଲଦି ଯା । ଆଉ ଶୁଣ, ମୋ କଥା ପଚାରିଲେ କହିବୁ, ମୋ ଦେହ ଭଲ ନାହିଁ । ସେଥିଲାଗି ଯାଇ ପାରିଲିନି, ବୁଝିଲୁ ।"

"ଆଜ୍ଞା ।"

"ଯା, ଜଲଦି ଗାଡ଼ି କାଢ଼ ।"

ସତକୁ ସତ ସନିଆ ଅଧଘଣ୍ଟାକରେ ଗାଡ଼ି ପହଞ୍ଚେଇ ଦେଲା ଷ୍ଟେସନରେ । ଅନେକ ସମୟ ଅପେକ୍ଷା କଲାରୁ ଦେଖିଲା, ରେଳଗାଡ଼ି ଆସୁଛି ଧୀର ମନ୍ଥର ଗତିରେ । ଗାଡ଼ି

ରହିଲାରୁ ଇନ୍ଦିରା ମନୁ ଓ ତା ବୋଉ ଓହ୍ଲେଇଲେ ଜିନିଷପତ୍ର ନେଇ । ଇନ୍ଦିରା ଅନେଇଲା ଚାରିଆଡକୁ ସତ୍ୟବ୍ରତ ଆସିଥିବ ଆଶାକରି । କାହିଁ ସତ୍ୟବ୍ରତ ? ତା ବଦଳରେ ଆସି ନମସ୍କାର କଲା ସନିଆ । ହସଟା ତାର ଏ କାନରୁ ସେ କାନ ଯାକେ ବିଳମ୍ବିତ ।

"କ'ଣ ସନିଆ ବାବୁ ନାହାନ୍ତି ?" ଇନ୍ଦିରା ପଚାରିଲା ।

"ଆଜ୍ଞା, ବାବୁ ଆସି ନାହାନ୍ତି । ଗାଡି ପଠେଇ ଦେଇଛନ୍ତି ।"

କୁଲି ଡାକି ମାଲ ଉଠେଇ ଦେଲା ମନୁ । ବୋଉକୁ ଡାକିଲା ଇନ୍ଦିରା, ସେମାନେ ଚାଲିଲେ ବସ୍ ପାଖକୁ ।

"ଆଜ୍ଞା ଗାଡି ଆଣିଛି, ବସ୍‌ରେ କିଆଁ ଯିବେ ?" ଆପତ୍ତି କଲା ସନିଆ ।

"ମୁଁ ତ ଗାଡି ମାଗି ନ ଥିଲି ।" ଇନ୍ଦିରା ଜବାବ ଦେଲା ।

"ଆଜ୍ଞା", ମୁଣ୍ଡ କୁଣ୍ଡେଇଲା ସନିଆ ।

ଇନ୍ଦିରା ଅଟଳ । ସେ ଆଗେଇ ଗଲା ବାସ୍ ପାଖକୁ ।

ବୋଉ କହିଲେ, "କିଲୋ ଚୌଧୁରୀ ଗାଡି ପଠେଇଛନ୍ତି ।"

"ତାଙ୍କ ଗାଡିରେ ଆମେ କାହିଁକି ଚଢ଼ିବା ବୋଉ । ଆମର ସରକାରି ଗାଡି ଅଛି ।"

ମନୁ ଜିନିଷପତ୍ର ଉଠେଇ ଦେଲା । ସମସ୍ତେ ଯାଇ ବସିଲେ ବାସ୍‌ରେ ।

ସନିଆ ଆସି ଠିଆ ହେଲା ବାସର ଝରକା ପାଖରେ ।

"ଆଉ କ'ଣ ସନିଆ ? ବାବୁଙ୍କୁ କହିବ ଆମେ ଆସିଛୁ ।" ଇନ୍ଦିରା କହିଲା ।

"ଆଜ୍ଞା, ବାବୁ ଚିଡିବେ ମୋ ଉପରେ ।"

"କାହିଁକି ? ତୁମେ କ'ଣ କଲ ?"

ବାସ୍ ଛାଡ଼ିବାକୁ ହେଲା । ସନିଆ ମନ ଦୁଃଖରେ ଗାଡିକି ଫେରିଗଲା ।

ସତ୍ୟବ୍ରତ ସବୁ ଶୁଣିଲା, ଚୁପ୍ କରି ରହିଲା । ଦୁଇଦିନ ପରେ ସେ ଗଲା ଅନୁଗୁଳକୁ, ସଞ୍ଜବେଳେ । କ'ଣ ସବୁ କିଣିବ । ଗୋଟାଏ ଗଛ ମୂଳରେ ତା ଗାଡି ରଖି ଓହ୍ଲଉଛି, ଦେଖା ହେଲା ମନୁ ସାଙ୍ଗରେ । ମନୁ ନମସ୍କାର କଲା ।

"କି ଖବର ମନୁ ?" ପଚାରିଲା ସତ୍ୟବ୍ରତ ।

"ନାନୀ ଆସିଛି । ବୋଉ ବି । ଏଇ ଯେ ଆସୁଛନ୍ତି ।"

ସତ୍ୟବ୍ରତ ଦେଖିଲା ସେମାନଙ୍କୁ । ନମସ୍କାର କଲା ମାଉସୀଙ୍କୁ । ଇନ୍ଦିରାକୁ ଦେଖି କହିଲା, "ମୋତେ ଅପଦସ୍ତ କରିବାର ଅଧିକାର ଆପଣଙ୍କର ଅଛି, ମୁଁ ମନା କରୁନି । କିନ୍ତୁ ସନିଆ ଆଗରେ ଯଦି ସେ କାମଟା କରନ୍ତି, ମୋର କ୍ଷୋଭର ସୀମା ରହିବନି । କୁହନ୍ତୁ, କି ଅପରାଧ ମୁଁ କରିଛି ଯେ, ସେଦିନ ମୋତେ ଇମିତି ଶାସ୍ତି ଦେଲେ ।"

ମାଉସୀ କହିଲେ, '' କୁହନି ବାପା, ମୁଁ ଯେତେ କହିଲି, କିଲୋ ଚୌଧୁରୀ ଗାଡ଼ି ପଠେଇଛନ୍ତି ତୋ ପାଇଁ, ସେଥିରେ ଚାଲ୍ । ନାଁ, ଜିଦି କ'ଣ କମ୍ ଝିଅର ? ''

ଏଥର କଥା କହିଲା ଇନ୍ଦିରା, ''ଆପଣଙ୍କ ଯେ ସେଦିନ ମୋ ପାଇଁ ଗାଡ଼ି ପଠେଇ ଥିଲେ, ମୁଁ ଜାଣିବି କିମିତି ? ''

''କାହିଁକି, ସନିଆ କହିନି ? ''

''ସନିଆ କଥାରେ ମୁଁ କ'ଣ ଆସି ଗାଡ଼ିରେ ବସିଥାନ୍ତି ?''

''ତା ହେଲେ ମୋର ଅପରାଧ ହୋଇଛି ।'' କହିଲା ସତ୍ୟବ୍ରତ । ''ମୁଁ ବି ସେଦିନ ଟିକିଏ ଅସୁସ୍ଥ ଥିଲି । ''

''କ'ଣ ହୋଇଥିଲା ଆପଣଙ୍କର ? '' ପଚାରିଲା ଇନ୍ଦିରା ।

''ସିମିତି କିଛି ନୁହେଁ । ସେ ଯାହା ହଉ ମୋର ଅପରାଧ ପାଇଁ କ୍ଷମା ମାଗୁଛି । ଆସନ୍ତୁ, ବସନ୍ତୁ ମୋ ଗାଡ଼ିରେ । ''

''କୁଆଡେ ନେଇଯିବେ ? '' ହସି ପକେଇଲା ଇନ୍ଦିରା ।

''ଆପଣଙ୍କ ବସାକୁ । ଡାକ୍ତରଖାନା । ''

''ଯିବା ବୋଉ ? ''

''ଚାଲ । ''

ପଛରେ ବସିଲା ମନୁ । ଆଗରେ ସତ୍ୟବ୍ରତ ପାଖକୁ ବସିଲା ଇନ୍ଦିରା, ତା'ପରେ ତା ବୋଉ । ଆଖି ପିଛୁଳାକେ ସତ୍ୟବ୍ରତ ଗାଡ଼ି ଆଣି ପହଞ୍ଚେଇ ଦେଲା ଇନ୍ଦିରାର ଘର ଆଗରେ । ଏମାନେ ଓହ୍ଲେଇ ଗଲେ । ଇନ୍ଦିରା ଡାକିଲା, ''ଆସନ୍ତୁ । ''

'' ଯିବି ? ''

''ହଁ । ''

ଘର ଭିତରୁ ଆଲୁଅ ଆସି ପଡୁଥାଏ ଇନ୍ଦିରାର ଦେହରେ, ମୁହଁରେ । ସତ୍ୟବ୍ରତ ଦେଖିଲା ଏକ ଅର୍ଥପୂର୍ଣ୍ଣ ହସ ଇନ୍ଦିରା ମୁହଁରେ । ସେ ଲୁବ୍ଧ ହେଲା । କିନ୍ତୁ ବସି ରହିଲା ସିମିତି ଷ୍ଟିଅରିଂ ଧରି । ଗାଡ଼ିର ଏନ୍‌ଜିନ୍ ବନ୍ଦ କରି ନ ଥାଏ । ବୋଉ ଆଉ ମନୁ ଘର ଭିତରକୁ ଗଲେଣି ।

''ଓହ୍ଲାନ୍ତୁ । '' ଇନ୍ଦିରା ସତ୍ୟବ୍ରତର ବାହୁରେ ଗୋଟାଏ ହାତ ରଖିଲା । ଟିକିଏ ଅପେକ୍ଷା କଲା ସତ୍ୟବ୍ରତ । ଇନ୍ଦିରା ହାତ ଟାଣି ନେଲା ନାହିଁ । ତା ମୁହଁକୁ ଚାହିଁ, ହସି, ଗାଡ଼ି ବନ୍ଦ କରି, ଓହ୍ଲାଇପଡ଼ି ଠିଆ ହେଲା ଇନ୍ଦିରା ସାମନାରେ । ନିମ୍ନ କଣ୍ଠରେ କହିଲା, ''ଇନ୍ଦିରା ଦେବୀ, ନାରୀର ଅନେକ ରୂପ ମୁଁ ଦେଖିଛି । ଆଜି ଆପଣ ମୋ ଆଗରେ ଯେଉଁ ଅପରୂପ ମୂର୍ତ୍ତିରେ ଠିଆ ହୋଇଛନ୍ତି, ତାର ଉପମା ନାହିଁ ।''

"ଚୁପ୍ ! ବଉ ଅଛି, ଶୁଣିବ ।"

"କିନ୍ତୁ ଏ ଅମୃତ ମୁହଁ ପାଖକୁ ଆଣି କାଢ଼ି ନେଇଗଲେ, ରକ୍ତ ମାଂସର ମଣିଷ ମୁଁ ସହିବି କିମିତି ?"

"ସହିବାକୁ ହବ । ଆସନ୍ତୁ ।" ସତ୍ୟବ୍ରତର ହାତରେ ମୃଦୁ ଆକର୍ଷଣ କରି ଆଗେଇଲା ଇନ୍ଦିରା ଏବଂ ଗୋଟାଏ ଡିଆଁରେ ପିଣ୍ଡାକୁ ଉଠି, ତା ଦାଣ୍ଡଘର ଭିତରକୁ ଡାକିଲା ସତ୍ୟବ୍ରତକୁ । ତାକୁ ସେଠି ବସେଇ କହିଲା, "ମୁଁ ଟିକିଏ ଆସୁଛି ।"

ଚାଲିଗଲା ସେ ।

ଫେରି ଆସିଲା ଇନ୍ଦିରା ମିନିଟିକ ଭିତରେ । ସତ୍ୟବ୍ରତର ସାମନାକୁ ଗୋଟାଏ ଚୌକିରେ ବସି ପଡ଼ି କହିଲା, "ଯା ହଉ, ଶେଷରେ ଆପଣଙ୍କ ସାଙ୍ଗରେ ଦେଖା ହେଲା ।"

"ମୋର ଦୁର୍ଭାଗ୍ୟ । କାହାକୁ କହିବି ?" ହସି କହିଲା ସତ୍ୟବ୍ରତ ।

"ସୁବ୍ରତ ପାଖରୁ ଚିଠି ପାଇଛନ୍ତି ?"

"ହଁ, ସେ ଭଲରେ ପହଞ୍ଚିଛି । ସେଦିନ କଟକ ଷ୍ଟେସନରେ ଆପଣଙ୍କୁ ନ ଦେଖି ତାର ଯଉଁ ଦୁଃଖ, ମୋର ତ ଛାତି ଫାଟି ଯାଉଥାଏ ।"

"ସେଥିଲାଗି ଆପଣ ଦାୟୀ । ଆପଣଙ୍କ ଗାଡି ଖରାପ ହେଲା ବାଟରେ ।"

"ଗାଡିଟା ପୁରୁଣା ହୋଇଗଲାଣି । ତାର ଦୋଷ କ'ଣ ?"

"ନୂଆ ଗାଡି କିଣୁ ନାହାନ୍ତି ?"

"କ'ଣ ହବ ? ଚଢ଼ିବ କିଏ ?"

"କାହିଁକି ଆପଣ ? ସୁବ୍ରତ ?"

ସୁବ୍ରତ କେତେଦିନ ବା ଥାଏ ଏଠି ମୋ ପାଖରେ ? ଥାଉ ମୁଁ ? ମୋ ପାଇଁ ଏ ଗାଡି ଯଥେଷ୍ଟ ।"

" ଏଟା ଆପଣଙ୍କର ସେଇ ଚୌଧୁରୀ ମାର୍କା ବିନୟ ।"

ହସି ଉଠିଲା ସତ୍ୟବ୍ରତ । ମାଉସୀ ଆସିଲେ ଜଳଖିଆ ନେଇ । ପଛରେ ମନୁ, ତା ହାତରେ ଚା' ।

" ଏ କ'ଣ ମାଉସୀ । ମରିଗଲା ମଣିଷ ।"

"ଆପଣ ତ ବୋଉ ବାପଘରର ଜମିଦାର ଥିଲେ । ସେ ସମ୍ପର୍କଟା କ'ଣ ଭୁଲିବାର ।" ଇନ୍ଦିରା କହିଲା ହସି ହସି ।

ଚା, ଜଳଖିଆ ଖାଇ ସାରି, ଗୋଟାଏ ସିଗ୍ରେଟ ଲଗେଇ, ଆରାମ କରି ବସିଲା ସତ୍ୟବ୍ରତ । ପଚାରିଲା ଇନ୍ଦିରାକୁ "କିମିତି ଲାଗୁଛି ଅନୁଗୁଳ ?"

"ସବୁ ଭଲ, କିନ୍ତୁ କାମ ବହୁତ । ବହୁତ ରୋଗୀ ଏଠି । ଏଠିକା ଡାକ୍ତରଖାନା ଆହୁରି ବଡ଼ ହବା ଦରକାର ।"

''ଆପଣ ସୁପାରିଶ କରନ୍ତୁ ସରକାରଙ୍କୁ ।''

''ମୁଁ କିଏ ? ତାଛଡ଼ା ମୋ କଥାରେ କଣ କିଛି ହବ ? ବରଂ ଆପଣମାନେ ଲାଗିଲେ କିଛି ହୋଇପାରେ ।''

''ବେଶ୍,ଆପଣଙ୍କ କଥା ମୁଁ ଆମ ଏମ୍.ଏଲ୍.ଏ ମହାଶୟଙ୍କୁ କହିବି ।''

ବୋଉ ଆସିଲେ ପାନ ନେଇ ।

ଇନ୍ଦିରା ପଚାରିଲା, ''ପାନ କଉଠୁ ପାଇଲୁ ବୋଉ ? ଆମ ଘରେ ତ ପାନ ନାହିଁ ?''

''ଶୁଣ ଝିଅର କଥା । ପାନ କ'ଣ ଅନୁଗୁଳରେ ମିଳେ ନାହଁ ।''

''ସେଇ କଥା ବୁଝନ୍ତୁ ମାଉସୀ । ଆପଣଙ୍କ ଝିଅଙ୍କ ମେଜାଜ୍, ବାବାରେ ବାବା.... ।''

କଥାଟା ଶେଷ ନ କରି ଥାଳିଆରୁ ଗୋଟାଏ ପାନ ଉଠେଇ ନେଇ ପାଟିରେ ପୁରେଇଲା ସତ୍ୟବ୍ରତ ।

''ତୁମେ ପରା ଏଇଠି ପାଖରେ ଥାଅ ବାପା ?'' ପଚାରିଲେ ମାଉସୀ ।

''ହିଁ । ଏଠୁଁ ଛ ମାଇଲ ଦୂରରେ । ଆସନ୍ତୁ ନା ଫାର୍ମକୁ ଦିନେ । ଦେଖିବେ ଆପଣଙ୍କ ଜମିଦାର ବଂଶଧର କିମିତି ଚଷା ହୋଇଛି । କାଲି ଆସନ୍ତୁ ।'' ନିମନ୍ତ୍ରଣ କଲା ସତ୍ୟବ୍ରତ ।

'' ନା ।'' ଆପତ୍ତି କଲା ଇନ୍ଦିରା । ''ରବିବାର ଦିନ ତିନିଟା ବେଳକୁ ଯିବା ।''

''ବେଶ୍, ରବିବାର ଦିନ ତିନିଟା ବେଳକୁ ମୁଁ ଗାଡ଼ି ନେଇ ହାଜର ହେବି । ଠିକ୍ ତ ?'' ଉଠି ଠିଆ ହେଲା ସତ୍ୟବ୍ରତ । ଥାଳିଆରୁ ଆଉ ଗୋଟାଏ ପାନ ଉଠେଇ ନେଲା ।

''କଣ ବାହାରିଲ ବାପା ?'' ମାଉସୀ ପଚାରିଲେ ।

''ହଁ ମାଉସୀ । ବଜାରରେ ମୋର ଟିକିଏ କାମ ଅଛି । ତାକୁ ସାରି ଫେରିବି ।''

ପିଣ୍ଡାରେ ବୋଉ ଆଉ ମନୁ ଠିଆ ହେଲେ । ସତ୍ୟବ୍ରତ ସାଙ୍ଗରେ ଗାଡ଼ି ପର୍ଯ୍ୟନ୍ତ ଗଲା ଇନ୍ଦିରା । ସତ୍ୟବ୍ରତ ଗାଡ଼ିରେ ବସିଲା ପରେ ସେ ଚାଲି ଆସୁଥିଲା । ତାକୁ ଡାକିଲା ସେ, ''ଇନ୍ଦିରା ଦେବୀ, ଆଉ ଟିକିଏ ।''

ଇନ୍ଦିରା ଫେରିଗଲା ତା ପାଖକୁ । ଚୁପଚୁପ୍ କହିଲା ସତ୍ୟବ୍ରତ । ''ଆଁ କରନ୍ତୁ ।''

''କାହିଁକି ?''

'' ଆଃ, କରନ୍ତୁ ନା ଆଁ ?''

ଇନ୍ଦିରା ଆଁ କଲା । ସତ୍ୟବ୍ରତ ପାନଟା ଦେଲା ତା ପାଟିରେ । ତା' ପରେ ଗାଡ଼ି ଷ୍ଟାର୍ଟ କରି ତୀର ବେଗରେ ବାହାରିଗଲା ଡାକ୍ତରଖାନା ହତାରୁ ।

ବୋଉ ଦେଖିଲେ । ଝିଅ ପାନ ଚୋବେଇ ଚୋବେଇ ପିଣ୍ଡାକୁ ଉଠୁଚି । ହସିଲେ ସେ ।

# ପନ୍ଦର

ରବିବାର ଦିନ ତିନିଟା ବେଳକୁ ସତ୍ୟବ୍ରତ ଗାଡି ଲଗେଇଲା ଇନ୍ଦିରାର ଦୁଆର ମୁହଁରେ । ଆଗ ବାହାରି ଆସିଲା ମନୁ ।

''ନାନୀ ? '' ପଚାରିଲା ସତ୍ୟବ୍ରତ ।

''ଅଛି । ଲୁଗା ପିନ୍ଧୁଛି । ''

ଗାଡିରୁ ଓହ୍ଲେଇଲାରୁ ମନୁ ତାକୁ ନେଇ ଦାଣ୍ଡ ଘରେ ବସେଇଲା । ମାଉସୀ ଆସିଲେ ହସି ହସି । କହିଲେ, ''ଚୁନି ଆସୁଛି ବାପା, ତୁମେ ବସ । ''

ସେ ଚାଲିଗଲେ । ଇନ୍ଦିରା ଆସିଲା । ସାଜିସ୍‌ଜି ଆସିଛି ସେ, ଘର ଭିତରକୁ ପଶିଲାରୁ ସତ୍ୟବ୍ରତର ନାକରେ ବାଜିଲା ସେଇ ପୁଷ୍ପସାରର ବାସ୍ନା । ମୁଚୁକି ହସି ଅନେଇ ରହିଲା ସେ ଇନ୍ଦିରାକୁ । ଲଜ୍ଜିତ ହେଲା ଇନ୍ଦିରା ।

''ମୋ ଆଡକୁ ଇମିତି ଅନେଇ ରହିଛନ୍ତି ଯେ ? ଆପଣ କ'ଣ ମୋତେ ଦେଖି ନାହାନ୍ତି ? ''

'' ନା ଇନ୍ଦିରା ଦେବୀ, ଏ ଏକ ନୂଆ ରୂପ ଆପଣଙ୍କର । ପ୍ରତିଥର ଦେଖେଁ ନୂଆ ନୂଆ ରୂପେ । ''

''ଆସ୍ତେ, ବୋଉ ଶୁଣିବ । ''

''ଶୁଣିଲେ ତ ସୁବିଧା ହୁଅନ୍ତା ।''

''କ'ଣ ସୁବିଧା ହୁଅନ୍ତା ? ''

''ସବୁ କଥାର ଉତ୍ତର ଦେବା ଚୌଧୁରୀମାନଙ୍କର ରୀତି ନୁହେଁ । ''

ବୋଉ ଓ ମନୁ ଆସିଲାରୁ ସମସ୍ତେ ଯାଇ ଗାଡିରେ ବସିଲେ । ସତ୍ୟବ୍ରତ ଉଡେଇ ନେଇଗଲା ସେମାନଙ୍କୁ ତା ଫାର୍ମକୁ, ଘର ଆଗରେ ଯୋରରେ ବ୍ରେକ୍ କସି ଗାଡି ବନ୍ଦ କରି ଡେଇଁପଡ଼ି ଡାକିଲା, ''ସନିଆ । ''

ଦଉଡି ଆସିଲା ସନିଆ, ତା ପଛକୁ ତା ମା ବାପ ମଧ୍ୟ ଆସିଲେ । ଇନ୍ଦିରା ଗାଡିରୁ ଓହ୍ଲେଇ ପଚାରିଲା, ''କିମିତି ଅଛ ସନିଆ ମା, କିମିତି ଅଛ ଭୀମ ? ଏ ମୋ ବୋଉ ଆଉ ଏ ସାନଭାଇ । ''

ସେମାନେ ତା' ବୋଉକୁ ନମସ୍କାର କଲେ । ସମସ୍ତେ ଯାଇ ବସିଲେ ବୈଠକ ଖାନାରେ ।

ଇନ୍ଦିରା କହିଲା, ''ଏଠି ବସି କଣ ହବ ବୋଉ ? ଚାଲ ବୁଲି ଦେଖିବୁ ମିଷ୍ଟର ଚୌଧୁରୀଙ୍କ ଫାର୍ମ । ''

ହଠାତ୍ ତାର ନଜର ପଡ଼ିଲା ଗୋଟିଏ ଛବି ଉପରେ । କାଛରେ ଟଙ୍ଗା ହୋଇଛି । ଏ ତ ସୁବ୍ରତ । ‘‘ଆଗରୁ ତ ଏ ଛବି ନ ଥିଲା ଏଠି ? ’’ ପଚାରିଲା ସେ ସତ୍ୟବ୍ରତକୁ ।

‘‘ନା, ଏବେ ଆସିଛି । ’’

ସୁବ୍ରତ ବସିଛି ଗୋଟାଏ ସିଂହାସନ ଭଳି ପ୍ରକାଣ୍ଡ ଚୌକିରେ । ପିନ୍ଧିଛି ରାଜବେଶ, ଗୋଡ ରଖିଛି ଗୋଡାଏ ଫୁଟ୍‌ଷ୍ଟୁଲ ଉପରେ । ମୁରୁକି ମୁରୁକି ହସୁଛି, ତାର ସେଇ ବଡ଼ ବଡ଼ ସୁନ୍ଦର ଆଖି ଯୁଗଳରେ ଖୁସି ଉପୁଚି ଉଠୁଛି । ଅନେକ ସମୟ ଧରି ଛବିଟା ଦେଖିଲା ଇନ୍ଦିରା ।

‘‘ତାର ଆଉ ବଳକା ଛବି ନାହିଁ ? ’’ ପଚାରିଲା ସେ ।

‘‘ହଁ, ଆପଣଙ୍କ ପାଇଁ ରଖି ଯାଇଛି ଗୋଟାଏ ଅଟୋଗ୍ରାଫ ଛବି । ଯଥା ସମୟରେ ପାଇବେ । ’’

ସତ୍ୟବ୍ରତ ମନ ଦେଲା ଏମାନଙ୍କ କଥା ଆଡକୁ ।

‘‘ ତା ହେଲେ ମାଉସୀ, ଦିନ ଥାଉଁ ଥାଉଁ ବୁଲାବୁଲି ସାରିଦେବା । ଜଙ୍ଗଲ ଜାଗା ।’’

‘‘ଏଠି କ’ଣ ବାଘ ଥାନ୍ତି ? ’’ ମନୁର ପ୍ରଶ୍ନ ।

‘‘ହୁଁ । ମହାବଳ ବାଘ ପଲ ପଲ । ’’

ସତ୍ୟବ୍ରତ କଥାରେ ହସିଲେ ସମସ୍ତେ ।

ବୁଲି ବୁଲି ଦେଖିଲେ ମାଉସୀ ଫାର୍ମର ପ୍ରତି ଅଂଶ । ଗୋଟାଏ ଲୋକ ଯେ ଏତେ କରିପାରେ, ଏତେ ପ୍ରକାର କରିପାରେ, ଦେଖି ଖୁସି ହୋଇଗଲେ ସେ । ଚୌଧୁରୀ ଘର ବ୍ୟବସ୍ଥା । ସବୁ ଅସାଧାରଣ ସେମାନଙ୍କର । ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ସେଇ କଳଟା ଦେଖି, ଦୁଧରୁ ଯେ ସାଙ୍ଗେ ସାଙ୍ଗେ ଲହୁଣୀ କାଢୁଛି । ଗୋଦାମ ଦେଖିଲେ — ଜମା ହୋଇଛି ପରିବା । ଗାଈ ମଇଁଷି ଦେଖି, ଭାରି ଖୁସି ହେଲେ । ହାତ ବୁଲେଇଲେ ଗାଈ ବାଛୁରୀ ଦେହରେ ! ବିଲରେ ଧାନ ସବୁ ପାକଳ ହେଲାଣି । ଏତେ ଶୀଘ୍ର ଧାନ ହେଲା କିମିତି ?

ପଚାରିଲେ, ‘‘କେବେ କାଟିବ ବାପା, ଧାନ ? ’’

‘‘ଆଠଦଶ ଦିନରେ । ତା ପରେ ଏଠି ସବୁ ବୁଣା ହବ, ଗହମ, ମୁଗ, ବିରି, ସୋଲା । ’’

ପରିବା ବଗିଚା ଦେଖି ଫେରିଲାବେଳକୁ ସଞ୍ଜ ହୋଇଗଲା । ବିଜୁଳିବତି ଜଳି ଉଠିଲା ଚାରିଆଡେ । ବଡ଼ ଆଲୁଅଟା ଲଗେଇଲା ସତ୍ୟବ୍ରତ — ତିନିଶହ ଶକ୍ତିର ପାରଦ ବାଷ୍ପର ଆଲୋକ । ଘର ଚାରିପଟେ ଜହ୍ନ ଆଲୁଅ ପରି ଆଲୁଅ ପଡ଼ିଲା । ମନେ ହେଲା, ସବୁ ଯିମିତି ସ୍ୱପ୍ନ । ଇନ୍ଦିରା ଆଖିରେ ନିଶା ଲାଗିଲା । ଘରକୁ ଆସୁ ଆସୁ ଆଗେ ପଶିଲେ ରୋଷେଇ ଘରେ । ପିଣ୍ଡାରେ ଠିଆ ହୋଇ ଦେଖିଲା ଇନ୍ଦିରା, ଘର ଭିତରେ ଭୀମ ରୋଷେଇ

ବସେଇଛି । ସନିଆ କଣ କାମ କରୁଛି । ତା ମା କାଟୁଛି ପରିବା । ବାହାରେ ଉଠା ଚୁଲିରେ ଜାଳ ଦେଉଥାନ୍ତି ଜଣେ ବିଧବା । ଇନ୍ଦିରା ପଚାରିଲା, ''ଏ କିଏ ?'' ଆଗରୁ ତାଙ୍କୁ ସେ ଦେଖି ନ ଥିଲା ।

''ସେ ମୋର ପିଉସୀ ହେବେ । ତାଙ୍କ ପୁଅଟି ମୋର ଏଠି କାମ କରେ । ମାଉସୀ ତ ଆମ ଖାଦ୍ୟ ଖାଇବେ ନାହିଁ କିମ୍ବା ଭୀମ ହାତରନ୍ଧା ଖାଇବେ ନାହିଁ, ସୁତରାଂ....''

ଆପତ୍ତି କଲେ ମାଉସୀ, '' କି ଦରକାର ଥିଲା ବାପା ? ''

''ଆଉ କଣ ଉପାସ ରହନ୍ତ କି ସମୁଧୁଣୀ ? '' ଓଢ଼ଣା ଭିତରୁ କହିଲେ ବିଧବା ।

ସମୁଧୁଣୀ, ଇନ୍ଦିରା ପକେଇଲା ସେଠୁ । ସତ୍ୟବ୍ରତ ହସିଲା ପଳାୟନରେ । ମାଉସୀ ସେଇ ପିଣ୍ଡାରେ ବସିବାକୁ ଯାଉଥିଲେ । ସନିଆ ଗୋଟାଏ ମାଞ୍ଚି ଆଣିଦେଲା । ଦୁଇ ବୁଢ଼ୀ ବସି ଗପ କଲେ ।

ସତ୍ୟବ୍ରତ ବୈଠକଖାନାକୁ ଆସି ଦେଖିଲା, ମନୁ ରେଡିଓଗ୍ରାମ ଖୋଲି ଗୀତ ଶୁଣୁଛି ବସି । ଇନ୍ଦିରା କାହିଁ ? କୁଆଡେ ଗଲା ସେ ? ତା ଶୋଇବା ଘର କବାଟ ଖୋଲି ଦେଖିଲା, ଇନ୍ଦିରା ଠିଆ ହୋଇଛି ଗୋଟାଏ ଛବି ପାଖରେ । ସତ୍ୟବ୍ରତର ବାହାଘର ବେଳର ଛବି । ଧୋତି ପଞ୍ଜାବି ପିନ୍ଧି, ମୁକୁଟ ମୁଣ୍ଡରେ ଲଗେଇ ସତ୍ୟବ୍ରତ ଠିଆ ହୋଇଛି । ତା ଆଗକୁ ଗୋଟାଏ କାଉଚରେ ବସିଛି ହେମମାଳୀ, ନବବଧୂ ବେଶରେ । ତା ମୁଣ୍ଡରେ ମଧ୍ୟ ମୁକୁଟ ।

ସତ୍ୟବ୍ରତର ପଦଶବ୍ଦରେ ଘୁଞ୍ଚି ଆସିଲା ଇନ୍ଦିରା ସେ ଛବି ପାଖରୁ । ତା ପରେ ହସି ପଚାରିଲା, '' ଏ ଛବି ତ ନ ଥିଲା ଏଠି ? ''

''ନା, ଦି'ଟା ସାରା ଏବେ ଆସିଛି ଟୋକିଓରୁ । ''

''ଏ ଛବି ଟୋକିଓ କିମିତି ଗଲା । ''

''ଡାକରେ, ପ୍ଲେନରେ ଉଡି ଉଡି । ''

ହସି ପକେଇଲା ଇନ୍ଦିରା, ''ପଠେଇଲା କିଏ ? ''

''ଆଉ କିଏ ? ଏଇ ଚକ୍ଷା । ''

ଏଥର ଦିଜଣ ସାରା ହସିଲେ । ଇନ୍ଦିରା ଖଟକୁ ଆଉଜି ଠିଆ ହୋଇ କହିଲା ''ଆପଣଙ୍କ ଷ୍ଟୁଡିଓ ଦେଖାନ୍ତୁ । ''

''ଦେଖେଇବି, କିନ୍ତୁ ଗୋଟାଏ ସର୍ତ୍ତରେ । ''

''କି ସର୍ତ୍ତ ? '' ଭ୍ରୂ -କୁଞ୍ଚନ କଲା ଇନ୍ଦିରା ।

''ଆପଣଙ୍କର ଛବି ଆଙ୍କିବାର ଅନୁମତି ଦେଲେ । ''

''ଆପଣ ମୋର ଛବି ଆଙ୍କିବେ ? ''

''ଆପତ୍ତି ଅଛି ?''

''ନା, ଏ ତ ଗୌରବର କଥା ।''

''ମୋତେ ସେ ଗୌରବର ଭାଗୀ ହବାର ସୌଭାଗ୍ୟ ମିଳୁ ।''

'' କିନ୍ତୁ ଆଙ୍କିବେ କିମିତି ?''

''ତୁଳିରେ କେନଭାସ ଉପରେ ।''

''ହଁ ଯେ । ମୋତେ ପାଇବେ କଉଠୁ ?''

''ସେଇ ତ ହେଲା ପ୍ରଶ୍ନ, ଯା'ର ଦାମ ଷାଠିଏ ହଜାର ଟଙ୍କା । ଆପଣଙ୍କୁ ପାଇବାକୁ ହବ ମୋତେ, ନ ହେଲେ ମୋର ଚଳିବନି ଇନ୍ଦିରା ଦେବୀ । ଆଇ ନୀଡ୍ ଇଉ ।''

''ମନ କଲେ କ'ଣ ସବୁ ମିଳେ ?'' ଇନ୍ଦିରାର ସହାସ୍ୟ ଉତ୍ତର ।

'' ନା ।'' ଦୀର୍ଘନିଶ୍ୱାସ ପକେଇଲା ସତ୍ୟବ୍ରତ ।

''ଅର୍ଜିବାକୁ ହୁଏ । ମୁଁ ଜାଣେ, କିନ୍ତୁ ....''

କିମିତି ହୋଇଗଲା ସେ କେତେ ମୂହୂର୍ତ୍ତ ପାଇଁ । ତାପରେ ସ୍ୱାଭାବିକ ହୋଇ ଆସିଲା । ଇନ୍ଦିରାର ଦି'ଟା ହାତକୁ ନିଜ ହାତରେ ଟେକି ନେଲା ସେ । ଇନ୍ଦିରା ବାଧା ଦେଲା ନାହିଁ । ତାକୁ ଆକର୍ଷଣ କଲା ସତ୍ୟବ୍ରତ ନିଜ ଆଡକୁ । ନଇଁ ଆସିଲା ଇନ୍ଦିରା ତା ଆଡକୁ । ହାତ ଛାଡ଼ି ଦେଇ ଇନ୍ଦିରାର ମୁହଁକୁ ଟେକିଲା ସେ ତା ଆଡକୁ । ଇନ୍ଦିରା ବାଧାଦେଲା । ଗମ୍ଭୀର ହୋଇ କହିଲା, ''ମିଷ୍ଟାର ଚୌଧୁରୀ ଆପଣ ମୋତେ ଅପମାନିତ କରୁଛନ୍ତି ।''

ସତ୍ୟବ୍ରତକୁ କିଏ ଯିମିତି ଚାବୁକ ମାଇଲା । ଚଟକରି ଛାଡ଼ିଦେଲା ସେ ଇନ୍ଦିରା ମୁହଁକୁ । ନିଷ୍ପ୍ରଭ ହୋଇଗଲା ତାର ମୁହଁ । ମୁଣ୍ଡ ତଳକୁ କରି କହିଲା, '' ଆଇ ବେଗ୍ ଇଓର ପାର୍ଡନ ।''

ଧୀର ଅଥଚ ପରିଷ୍କାର କଣ୍ଠରେ କହିଲା ଇନ୍ଦିରା, —

'' ମୁଁ ଓଡ଼ିଆ ଘରର କୁମାରୀ କନ୍ୟା । ମୋର ବୟସ ଯେତେ ହୋଇଥାଉ, ଗୁରୁଜନମାନଙ୍କ ଅନୁମତି ନ ନେଇ ଏବଂ ବିବାହ ନ କରି ମୋତେ ଆପଣ ପାଇବେ କିମିତି ?''

''ମୁଁ ଭୁଲ କରିଛି ଇନ୍ଦିରା ଦେବୀ । କି ଶାସ୍ତି ଦେବେ ଦିଅନ୍ତୁ ।'' ଦୁଇ ହାତ ଯୋଡି ସତ୍ୟବ୍ରତ ଠିଆ ହେଲା ଇନ୍ଦିରା ଆଗରେ । ହସିଲା ଇନ୍ଦିରା, ''ଶାସ୍ତି ପଛେ ମିଳିବ । ଚାଲନ୍ତୁ, ଆପଣଙ୍କ ଷ୍ଟୁଡ଼ିଓ ଦେଖାଯାଉ ।''

ବଞ୍ଚିଗଲା ସତ୍ୟବ୍ରତ । ଖୁସି ହୋଇ କହିଲା, ''ଚାଲନ୍ତୁ ।''

ଇନ୍ଦିରାକୁ ନେଇ ସତ୍ୟବ୍ରତ ପଶିଲା ଷ୍ଟୁଡ଼ିଓରେ । ଛୋଟ ଷ୍ଟୁଡିଓ । ଗୋଟାଏ ପାଖ କାଛ, କାଚର । ଅନ୍ୟ ତିନିପାଖ କାଛରେ ଟଙ୍ଗା ହୋଇଛି ଅନେକ ଛବି । ଅଧିକାଂଶ ଦୃଶ୍ୟପଟ

ଜାପାନୀ ପ୍ରଣାଳୀରେ ଅଙ୍କା । ପୋର୍ଟରେଟ ଅଙ୍କ । ଗୋଟିଏ ପୃଥୁଳ ଜଘନା, ଉନ୍ମୁକ୍ତ ବକ୍ଷା ଆଦିବାସୀ ଯୁବତୀ,ଆଖିରେ ତାର ସମ୍ଭୋଗ କାମନା । ଗୋଟିଏ ମାତୃତ୍ୱ, ସ୍ତନ୍ୟଦାନ କରୁଛି ମାତା, ମୁହଁରେ ସନ୍ତାନ ସ୍ନେହର ଲାଳିତ୍ୟ । ଇନ୍ଦିରାର ମନେ ହେଲା, ହେମମାଳୀର ମୁହଁର ଢ଼ାଞ୍ଚା ଅଛି ସେଇ ମା'ଟିର ମୁହଁରେ । କ୍ରୁଶବିଦ୍ଧ ଯୀଶୁ । ତଳେ ଲେଖା ହୋଇଛି, 'କଳା ଲୋକର ପ୍ରଭୁ ଯୀଶୁ ।' ଛବି ଗୁଡା ଅନବଦ୍ୟ । ପ୍ରଶଂସମାନ ଦୃଷ୍ଟିରେ ଦେଖିଲା ସେ ଛବି ଗୁଡିକୁ । ସ୍କେଚ୍ ଆଲ୍‌ବମ୍ ଦେଖିଲା । ଅନେକ ଛବି ଆଙ୍କିଛି ସତ୍ୟବ୍ରତ ।

''ଗୋଟାଏ ଅନୁରୋଧ କରିବି ? '' ସତ୍ୟବ୍ରତ ଯିମିତି ପ୍ରାର୍ଥନା କରୁଛି ।

''କ'ଣ ? '' ଇନ୍ଦିରାର ସହାସ୍ୟ ପ୍ରଶ୍ନ ।

''ଆପଣଙ୍କର ଗୋଟାଏ ଫଟୋ ଉଠେଇବାକୁ ଦେବେ ? ''

''ଆଚ୍ଛା । ''

ପ୍ରାର୍ଥନା ପୂରଣ କଲା ଇନ୍ଦିରା । ସତ୍ୟବ୍ରତ ସେଇ ମାତୃମୂର୍ତ୍ତିକୁ ବେକ୍ ଗ୍ରାଉଣ୍ଡ କରି ଠିଆ କଲା ଇନ୍ଦିରାକୁ । ତା' ପରେ ଛବି ଉଠେଇ ନେଲା ତାର ଜାପାନୀ କେମେରାରେ ।

ଘଡ଼ି ଦେଖି କହିଲା, ''ଛଟା ବାଜିବ । ଅଥଚ ଆପଣ କିଛି ଟିକିଏ ପାଟିରେ ଦେଇ ନାହାନ୍ତି । ଆସନ୍ତୁ ।''

ଦୁଇଜଣ ଆସି ବସିଲେ ବୈଠକଖାନାରେ । ମାଉସୀ ଆସିଲେ । ଚା' ଜଳଖିଆ ଆସିଲା । ଗପ କରୁ କରୁ ଖାଇଲେ ସମସ୍ତେ ।

ମାଉସୀ ଓ ମନୁ ପହରିଦିନ କଟକ ଫେରିଯିବେ । କଥା ଉଠେଇଲେ ମାଉସୀ, ''ତୁନି ଏଠି ଏକା ରହିବ ବାପା । ତାକୁ ଟିକିଏ ଦେଖିବ । ଦେଖାଯାଉ କ'ଣ ହଉଛି । ମୋର ବି ଇଚ୍ଛା ନୁହେଁ — ସେ ଇମିତି ଏକା ଏକା ...''

''ବୋଉ'' ସତର୍କ କଲା ଇନ୍ଦିରା । ବୋଉର ସ୍ଥାନ - କାଳ-ପାତ୍ର- ଜ୍ଞାନ ନାହିଁ ।

''ଖାଲି ବସିବା କାହିଁକି ? '' ପ୍ରସ୍ତାବ କଲା ସତ୍ୟବ୍ରତ, ''ମୋର ଗୋଟିଏ ଛୋଟ ପ୍ରୋଜେକ୍ଟାର ଅଛି । ସୁବ୍ରତ କିଣା କରେଇଥିଲା କଲିକତାରେ । ଅନେକ ଦିନୁ ବ୍ୟବହାର ନ ହୋଇ ପଡ଼ିଛି । କିମିତି ଅଛି ମୁଁ ଦେଖେ । ଛବି ଦେଖିବା ବସି ବସି । ଅଧିକାଂଶ ଅବଶ୍ୟ କାର୍ଟୁନ । ''

ପନ୍ଦର ମିନିଟ ଭିତରେ ଠିକଠାକ କରିନେଲା ସେ । ବାରନ୍ଦାରେ ଚୌକୀ ପକେଇ ବସିଲେ ସମସ୍ତେ । ସତ୍ୟବ୍ରତ ପର୍ଦା ଟାଙ୍ଗିଲା । ଶବ୍ଦ ବ୍ୟବସ୍ଥା କଲା, ପ୍ରୋଜେକ୍ଟାରରେ ଫିଲିମ ଲଗେଇଲା । ସେ ଆଜି ଡେସ୍ପାରେଟ୍ — ଇନ୍ଦିରାକୁ ଖୁସି କରିବାକୁ ହବ ତାକୁ । ଗୁଡ୍‌ବକ୍ ରକମ ବ୍ୟବହାର କରିଛି ସେ ତା ସାଙ୍ଗରେ । ଖାଇଛି ବି ପାହାରେ, ବେଶ୍ ଯୋର୍ । ତା ଦେହରେ ନିଆଁ ଲଗେଇଛି ଇନ୍ଦିରାର କଥାଗୁଡା । ଇନ୍ଦିରାକୁ ତାର ଦରକାର । ସେଥିପାଇଁ ଯେତେ ଦାମ୍ ପଡୁ, ସେ ଦବ ।

ବାରନ୍ଦାର ଆଲୁଅ ଲିଭେଇ ଆରମ୍ଭ ହେଲା ଛବି । ଛୋଟ ଛୋଟ କାର୍ଟୁନ, ଦଶ ମିନିଟ୍, ପନ୍ଦର ମିନିଟ୍ । ତା ପରେ ଲଗେଇଲା 'ତାନ୍‌ସେନ୍' । ସାଇଗଲ୍‌ର ଛବି । ପୁରୁଣା, ତଥାପି କି ଅପୂର୍ବ ସଙ୍ଗୀତ ସୃଷ୍ଟି କରିଛି ଲୋକଟା । ଇନ୍ଦିରା ଏ ଛବି ଦେଖି ନ ଥିଲା, ଏମିତି ସଂଗୀତ ଶୁଣି ନ ଥିଲା ।

ଛବି ବନ୍ଦ କରି ଆଲୁଅ ଜାଳି, ଘଡ଼ି ଦେଖିଲା ସତ୍ୟବ୍ରତ ।

''ଡେରି ହୋଇଗଲା ମାଉସୀ । ସନିଆ ?'' ପାଟି କରି ଡାକିଲା ସତ୍ୟବ୍ରତ । ଯନ୍ତ୍ର ଓ ଫିଲିମ୍‌କୁ ବାକ୍‌ସରେ ବନ୍ଦ କରି, କାନ୍ଥ କଡକୁ ଠେଲି ଦେଇ, ଇନ୍ଦିରା ଓ ମନୁକୁ ନେଇ ପଶିଲା ସେ ଖାଇବା ଘରେ । ମାଉସୀଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ।

ଖାଇସାରି ପୁଣି ଚଢ଼ିଲେ ସମସ୍ତେ ତା ଗାଡିରେ । ଅନୁଗୁଳରେ ଏମାନଙ୍କୁ ଛାଡ଼ି ଦେଇ ଆସିଲାବେଳେ, ଇନ୍ଦିରାଙ୍କୁ, ଏକାନ୍ତରେ ପଚାରିଲା, ''ଅପରାଧ ନେଇ ନାହାନ୍ତି ତ ?''

ହସି ମୁଣ୍ଡ ହଲେଇଲା ଇନ୍ଦିରା, ''ମିଷ୍ଟର ଚୌଧୁରୀ, ଆପଣଙ୍କ ତୁଳନାରେ ମୁଁ କିଛି ନୁହେଁ । ଓଡ଼ିଶାର ଆହୁରି ହଜାର ହଜାର ଝିଅଙ୍କ ପରି, ମୁଁ ଗୋଟାଏ ସାଧାରଣ ଝିଅ ।''

''ମୋ ପାଖରେ ଆପଣ ଅତୁଳନୀୟା । ଗୁଡ୍ ନାଇଟ୍ ।''

## ଷୋହଳ

ତହିଁ ଆରଦିନ ସକାଳୁ ସନିଆ ଆଣି ଦେଇଗଲା — ପରିବା, ଲହୁଣି, ମାଛ ଆଉ ଗୋଟାଏ କାଗଜ ବାକ୍‌ସ । ଇନ୍ଦିରା ସେତେବେଳକୁ ଡାକ୍ତରଖାନା ଚାଲିଗଲାଣି । ତା ବୋଉ ଫେରେଇ ଦେଇ ପାରିଲେ ନାହିଁ । ଅନିଚ୍ଛାରେ ନେଲେ । ଇନ୍ଦିରା ଘରକୁ ଫେରି ସବୁକଥା ଶୁଣି ଅସନ୍ତୁଷ୍ଟ ହେଲା । କାଗଜ ବାକ୍‌ସ ଖୋଲି ଦେଖିଲା, ସୁବ୍ରତର ଛବି, ବାଷ୍ଟ୍ । ମୁହଁଟା ବେଶ୍ ବଡ଼ ହୋଇ ଦିଶୁଛି । ଛବିର ଗୋଟାଏ କଣରେ ଲେଖା ହୋଇଛି — ''ମୋର ଆଣ୍ଟିଙ୍କ ପାଇଁ । ସୁବ୍ରତ ଚୌଧୁରୀ'' । ତା ତଳେ ତାରିଖ । ଟେବୁଲରେ ରଖିବା ଭଳି ଫ୍ରେମରେ ଲଗା ହୋଇଛି । ଖୁସି ହୋଇ ଛବିଟା ନେଇ ତା ଶୋଇବା ଘର ଟେବୁଲ ଉପରେ ରଖିଲା ଇନ୍ଦିରା ।

ସୁବ୍ରତ ପାଖରୁ ସେ ଚିଠି ପାଉଛି । ତାର ସେଇ ସୁନ୍ଦର ହସ୍ତାକ୍ଷରରେ ଛୋଟ ଛୋଟ ଇଂରେଜୀ ବାକ୍ୟ — ''ଆଣ୍ଟି, ତୁମ ଚିଠି ପାଇଛି । ତୁମକୁ ଦେଖିବାକୁ ମୁଁ ମରିଯାଉଛି । ପ୍ରାୟ ତୁମକୁ ସ୍ୱପ୍ନ ଦେଖେଁ । ଡିସେମ୍ବରରେ ମୁଁ ଘରକୁ ଯିବି । ଦଶ ତାରିଖରେ ଆମର ଛୁଟି ହେବ । ତା ପରେ ତୁମ ପାଖରେ ଅନେକ, ଅନେକ ଦିନ ରହିବି । ଓ ଆଣ୍ଟି, ତୁମକୁ ମୁଁ କେତେ ଭଲପାଏ । ତୁମେ ମୋତେ ଭଲ ପାଅନି ?''

ବୋଉ ଆଉ ମନୁ କଟକ ଫେରିବା ଦିନ ସତ୍ୟବ୍ରତ ଗାଡି ନେଇ ଆସିଲା । ସମସ୍ତେ ମିଶି ମେରାମୁଣ୍ଡଳି ଗଲେ । ଫେରିବା ପଥରେ ସତ୍ୟବ୍ରତ ଇନ୍ଦିରାକୁ ଫାର୍ମକୁ ନେଇ ଯିବାକୁ ଲୋଡିଲା । ଇନ୍ଦିରା ମନାକଲାରୁ ସେ ଜିଦ୍ କଲା । ଇନ୍ଦିରା ଚିଡି ଯାଇ କହିଲା, ''ଆପଣ ଭାରି ସ୍ୱାର୍ଥପର ମିଷ୍ଟାର ଚୌଧୁରୀ । ଆଉ ଯେ କାହାର ଇଚ୍ଛା ଅନିଚ୍ଛା ଥାଇପାରେ, ଏ କଥା ଆପଣ ବୁଝନ୍ତି ନାହିଁ ।''

ସତ୍ୟବ୍ରତ ତା କଥାରେ କ୍ଷୁର୍ଣ୍ଣ ହେଲା । ତାକୁ ତା ଘରେ ଛାଡ଼ିଦେଇ ବିଦାୟ ନ ନେଇ ଚାଲି ଆସିଲା ।

ତା ପରେ ପନ୍ଦର ଦିନ ସତ୍ୟବ୍ରତର ଦେଖା ନାହିଁ । ଇନ୍ଦିରା କ'ଣ ବା କରିବ ? ଚୁପ୍ ଚାପ ଅପେକ୍ଷା କଲା । ସାମାନ୍ୟ କଥାରେ ସେ ଚିଡିଗଲେ ସେଦିନ । ଇନ୍ଦିରା ଅନୁତାପ କଲା ।

ନଭେମ୍ବର ମଝାମଝି । ଦିନେ ସକାଳୁ ଡାକ୍ତରଖାନା ବାହାରୁଥାଏ ଇନ୍ଦିରା । ସନିଆ ଗୋଟାଏ ମାଛ ଆଣି ପହଞ୍ଚିଲା ।

''କେତେ ଦାମ୍ ଏ ମାଛ ?'' ଇନ୍ଦିରା ପଚାରିଲା ।

''ଆଜ୍ଞା, ବାବୁ ଦେଇଛନ୍ତି ।''

''କ'ଣ, ଲାଞ୍ଚ ।''

''ଆଜ୍ଞା ?'' ବୁଝି ପାରିଲା ନାହିଁ ସନିଆ ।

''ହୁଏ ଦାମ ନିଅ, ନ ହେଲେ ନେଇଯାଅ ତୁମ ମାଛ ।''

''ଆଜ୍ଞା ଦାମ କିମିତି ନେବି -''

''ତା ହେଲେ ଉଠାଅ ମାଛକୁ ।'' ରାଗିଗଲା ଇନ୍ଦିରା ।

ସନିଆ ତା ପାଟିରେ ଡରିଯାଇ ମାଛ ଉଠେଇ ନେଇ ଚାଲିଗଲା । ଇନ୍ଦିରା ଗଲା ତା କାମରେ ।

ଏ ଘଟଣାର ତିନିଦିନ ପରେ । ଇନ୍ଦିରା ବଜାର ଯିବ ବୋଲି ବାହାରୁଛି, ସନିଆ ଗାଡି ନେଇ ପହଞ୍ଚିଲା ।

ତାକୁ ଦେଖି ପଚାରିଲା ଇନ୍ଦିରା ''କି ଖବର ସନିଆ ?''

''ଆଜ୍ଞା ଖବର ଭଲ ନୁହେଁ ।''

''କ'ଣ ହେଲା ?'' ଶଙ୍କିତ ହେଲା ଇନ୍ଦିରା । ''ବାବୁ ଭଲ ତ ?''

''ଆଜ୍ଞା, ନା ।''

''କ'ଣ ହେଲା ତାଙ୍କର ?''

ଗୋଟାଏ ଢ଼ୋକ ଗିଳିଲା ସନିଆ । କିମିତି କଥାଟା କହିବ, ଭାବିଲା ଟିକିଏ ।

''କହୁନ କାହିଁକି ?'' ଧମକ ଦେଲା ଇନ୍ଦିରା । ତା ଛାତି ଥରୁଥାଏ ।

''ଆଜ୍ଞା ଆଜିକି ତିନିଦିନ ହେଲା ବାବୁ ବେହୋସ ।''

''ବେହୋସ ! କାହିଁକି ?''

''ସେଇ ଗୁରାକ ପିଉଚନ୍ତି । ବୋତଲ ବୋତଲ । ଗାଧୁଆ ନାଇଁ, ଖିଆ ନାଇଁ । କେହି ପାଖକୁ ଗଲେ ଚିଡି ଉଠି ବାହାର କରି ଦଉଚନ୍ତି । ମୋ ବାପା ମା' ତ ମୁଣ୍ଡରେ ହାତ ଦେଇ ବସିଛନ୍ତି ।''

ଅବସ୍ଥାଟା ଉପଲବ୍ଧି କଲା ଇନ୍ଦିରା । ଡାକ୍ତର ସେ । ଏ ରୋଗର ଲକ୍ଷଣ ସେ ପଢ଼ିଛି । ଦେଖିଛି ପ୍ରଫେସର ଦାସଙ୍କୁ । କି ଅଶାନ୍ତି ତାଙ୍କ ଘରେ । ପ୍ରଫେସାର ସବୁବେଳେ ମତ୍ତ ଅବସ୍ଥାରେ ଥା'ନ୍ତି । ସକାଳୁ ବରଂ ଭଲ । ବେଳ ବଢ଼ିଲେ ମାତଲାମୀ ବଢ଼େ, ସନ୍ଧ୍ୟାବେଳକୁ ଅବସ୍ଥା ଇମିତି ହୁଏ ଯେ, ତାଙ୍କୁ ଗୋଟାଏ ଘରେ ବନ୍ଦ କରି ରଖିବାକୁ ହୁଏ । ତାଙ୍କ ସ୍ତ୍ରୀ, ପୁଅ, ଝିଅ, ନାତି, ନାତୁଣୀ ସମସ୍ତେ ଏ ଦୁର୍ଭୋଗରେ ବିଷର୍ଣ୍ଣ । କିଛି ଉପାୟ ନାହିଁ ।

ଆଉ ଗୋଟିଏ ଛବି ଭାସି ଉଠିଲା ତା ଆଖିଆଗରେ । ଡକ୍ଟର ମହାନ୍ତି, ଆଉ ଜଣେ ଶିକ୍ଷକ ତାର । ସନ୍ତାନହୀନ ଦମ୍ପତି । ନିର୍ଝଞ୍ଝାଟ ଜୀବନ । ସଂଧ୍ୟା ହେଲେ ଦୁଇଜଣ ଆସି ବସନ୍ତି ବଗିଚାରେ । ସ୍ତ୍ରୀ ଢ଼ାଳନ୍ତି ଗିଲାସରେ ସୁରା । ସ୍ୱାମୀଙ୍କୁ ଦିଅନ୍ତି, ନିଜେ ପିଅନ୍ତି । ମଦ୍ୟପାନ ସାଙ୍ଗକୁ ଖୁସି ଗପ ଚାଲେ ତା ପରେ ରାତି ବଢ଼ିଲେ ଖାଇ ନେଇ ଶୋଇ ପଡ଼ନ୍ତି ।

ତାର ବ୍ୟକ୍ତିଗତ ଅଭିଜ୍ଞତା । ସମ୍ବଲପୁର ଜେନେରାଲ ହସପିଟାଲରେ ସେ ଥାଏ । ପ୍ରୌଢ଼ ସିଭିଲସର୍ଜନଙ୍କ ପାନାଭ୍ୟାସ ଥିଲା । ଅପରେଶନ ବେଳେ ଥିଏଟାରରେ ପିଅନ୍ତି ଅଳ୍ପ ଅଳ୍ପ । ସେଦିନ ତିନିଟା ଅପରେସନ ଥାଏ । ତୃତୀୟ ଅପରେସନ ଆଗରୁ କ'ଣ ପରା ତାକୁ କହିଥିଲେ । ସେ ଶୁଣିପାରି ନ ଥିଲା । ଅନ୍ୟ ଗୋଟାଏ କାମରେ ତାଙ୍କ ପାଖ ଦେଇ ଗଲାବେଳେ ତା କାନି ଧରି ଟାଣି ଦେଲେ ସିଭିଲସର୍ଜନ । ଚାରିଆଡେ ଡାକ୍ତର, ନର୍ସ ଏନେସଥେସିଷ୍ଟ । ରାଗରେ ଲାଲ ପଡ଼ିଗଲା ଇନ୍ଦିରା । ତା ମୁହଁକୁ ଚାହିଁ କାନିଟା ଛାଡ଼ି ଦେଲେ ସିଭିଲ ସାର୍ଜନ ।

କାମ ସାରି ହାତ ଧୋଉଥାନ୍ତି । ଇନ୍ଦିରା ଆସି ଠିଆ ହେଲା ତାଙ୍କ ପାଖରେ । କହିଲା, ''ଆପଣ ଆଜିକାର ବ୍ୟବହାର ପାଇଁ କ୍ଷମା ମାଗିବେ ନାଁ ମୁଁ ମନ୍ତ୍ରୀ ଆଉ ଡିରେକ୍ଟରଙ୍କୁ ତାର କରିବି ?''

ହାତ ଧୁଆ ବନ୍ଦ ହୋଇଗଲା ତାଙ୍କର । ଚାରିଆଡକୁ ଅନେଇଲେ ସେ । ସମସ୍ତେ ଗମ୍ଭୀର ହୋଇ ଅପେକ୍ଷା କରିଛନ୍ତି କ'ଣ ହେଉଛି ଦେଖିବାକୁ । ବୁଝି ପାରିଲେ ଅବସ୍ଥା । ହାତ ପୋଛି ଆସି କହିଲେ, ''ତୁମେ ମୋର ଝିଅ ପରି ମିସ୍ ମହାପାତ୍ର, ପ୍ଲିଜ୍ ଏକସ୍‌କିଉଜ ମି, ଇଫ୍ ଆଇ ଡିଡ୍ ନଟ୍ ବିହେଭ୍ ପ୍ରପରଲି ।''

କଥାଟା କିନ୍ତୁ ସେଠି ଛିଣ୍ଡିଲାନି । ସିଭିଲ ସାର୍ଜନ ଅପମାନକୁ ମନେ ରଖିଥିଲେ । ତାକୁ ବଦଳି କରିଦେଲେ ଗୋଟାଏ ମଫସଲ ଗାଁର ହେଲ୍‌ଥ ସେଣ୍ଟାରକୁ ।

ସନିଆ ସିମିତି ଠିଆ ହୋଇଥାଏ । ଇନ୍ଦିରା ତାକୁ କହିଲା, " ଟିକିଏ ରୁହ ମୁଁ ଆସୁଛି — ଯିବା । "

ଅଧଘଣ୍ଟାଏ ପରେ ସେ ଯେତେବେଳେ ସୁବ୍ରତ ଉଦ୍ୟାନରେ ପହଞ୍ଚିଲା, ଦେଖିଲା ସବୁ ଚୁପଚାପ । କାହାରି ମୁହଁରେ ହସ ନାହିଁ । ଭୀମ ଆସି ଠିଆ ହେଲା ।

"କ'ଣ ହେଲା ଭୀମ ? "

"ଆଜ୍ଞା ସେଇ କାଳୀପୂଜା ଦିନଠୁଁ ତ । ସନିଆ ମାଛ ନେଇ ତୁମ ଘରୁ ଫେରି ଥଇଲା । ବାବୁ ପଚାରିଲେ, କିରେ ମାଛ ଫେରେଇ ଆଣିଲୁ ଯେ ! ସନିଆ କହିଲା, ତୁମେ ଫେରେଇ ଦେଲ । ତା ପରେ କ'ଣ ହେଲା କେଜାଣି, ଘରେ ଯାଇ ଶୋଇଲେ । ସେଇଦିନୁ ଏ ଅବସ୍ଥା । "

"ଆଗରୁ କେବେ ଇମିତି ହୋଇଥିଲା ?"

"ହଁ, ତେବେ ଏଥର ବହୁତ ବେଶୀ । ଏଇ ସେଦିନ, ସାନବାବୁଙ୍କୁ କଟକ ନେଇ ଯାଇଥିଲେ । ଫେରି ଆସି ଇମିତି ଶୋଇଥିଲେ ଦି ଦିନ । ଏଥର ତିନିଦିନ ହେଲା ଖିଆ ଦିଆ କିଛି ନାହିଁ । ଖାଲି ସେଇଗୁରା ପିଉଛନ୍ତି । "

ଇନ୍ଦିରା ଶୁଣିଲା ସବୁ, ବୁଝିଲା କାରଣଟା କେଉଁଠି ? ମନ ଖୁବ୍ ଖରାପ ହେଲେ ମଣିଷ ଅସ୍ୱାଭାବିକ ବ୍ୟବହାର କରେ । ଏ କ୍ଷେତ୍ରରେ ସେଇଆ ହୋଇଛି । ସତ୍ୟବ୍ରତ ସାଙ୍ଗରେ ତାର ପ୍ରାୟ କୋଡ଼ିଏ ଦିନ ହେଲା ଦେଖା ସାକ୍ଷାତ୍ ହୋଇନି । ଅଥଚ ଏତେ ପାଖରେ ରହିଛି ସେ । ମାଛ ଫେରେଇ ଦେବାଟା ବାଧିଛି ଖୁବ୍ । ସେ ବ୍ୟଥିତ ହେଲା ଅନ୍ତରରେ । ଭୀମକୁ ପଚାରିଲା "କଉଁଠି ଅଛନ୍ତି ସେ ? "

"ତାଙ୍କ ଶୋଇବା ଘରେ । "

"ଚାଲ ମୁଁ ଯିବି । "

ଭୀମ ପଛେ ପଛେ ଆସିଲା ସେ । ସତ୍ୟବ୍ରତର ଶୋଇବା ଘର କବାଟ ଖୋଲିଲା ଭୀମ । ଘର ଅନ୍ଧାର ।

ସତ୍ୟବ୍ରତ ପଚାରିଲା, "କିଏ ? "

"ଆଜ୍ଞା, ମୁଁ ଭୀମ । "

"କ'ଣ ଦରକାର ? "

"ଆଜ୍ଞା ଡାକ୍ତର ସାନ୍ତାଣୀ ଆସିଛନ୍ତି । "

"କିଏ ? "

''ଡାକ୍ତର ସାନ୍ତାଣୀ । ''

''ଇନ୍ଦିରା ! କାହିଁକି ଆସିଛି ? ଯା କହିଦବୁ ମୁଁ ଶୋଇଛି । ଦେହ ଭଲ ନାହିଁ । ''

ଭୀମକୁ ପଛକୁ ଆସିବାକୁ କହି ଘର ଭିତରକୁ ପଶିଗଲା ଇନ୍ଦିରା । ପଚାରିଲା ''କ'ଣ ହୋଇଛି ଆପଣଙ୍କର ମିଷ୍ଟାର ଚୌଧୁରୀ ?''

ସୁଇଚଟା ଅଣ୍ଡାଳି ଟାଣିଦେଲା ସେ । ଘର ଆଲୋକିତ ହେଲା । ସତ୍ୟବ୍ରତ ଶୋଇଛି ଖଟରେ । ଦେହରେ ପାଇଜାମା ଆଉ ଗେଞ୍ଜି । ମୁଣ୍ଡର ବାଳ ଅବିନ୍ୟସ୍ତ । ମୁହଁରେ ରୁଢ଼ଗୁଡ଼ା ବଢ଼ିଛି । ଚେହେରା ଅତି ମଳିନ । ଖଟର ଅଦୂରରେ ଗୋଟାଏ ଟିପୟ ଉପରେ ବୋତଲ ଓ ଗିଲାସ । ଆଲୁଅ ଜଳିବାରୁ ମୁହଁଟାକୁ କାନ୍ଥ ଆଡକୁ କରି ଶୋଇଲା ସତ୍ୟବ୍ରତ, ''ଲିଭ୍ ମି ଏଲୋନ୍ । ''

ସବୁ ଦେଖିଲା ଇନ୍ଦିରା । ରାଗରେ, ଦୁଃଖରେ ତା ଦେହରେ ନିଆଁ ଜଳିଗଲା । ସତ୍ୟବ୍ରତ ଚୌଧୁରୀ ଏଇଆ — ଯାହାକୁ ସେ ଗଲା ଛ'ମାସ ଧରି ଅନ୍ତରରେ ପୂଜା କରିଛି । ମନ ପ୍ରାଣ ଦେଇ କାମନା କରିଛି ଯାହାକୁ ସେ ସ୍ୱାମୀ ରୂପରେ । କ୍ଷୋଭରେ ତା ଆଖିରୁ ଲୁହ ବୋହିଲା । ସୁବ୍ରତ କଥା ଭାବି ଆହୁରି କ୍ଷୁବ୍ଧ ହେଲା ସେ ।

''ଏ କ'ଣ କରୁଛନ୍ତି ଆପଣ ? ''

''That is none of your business. ଜଡ଼ିତ କଣ୍ଠରେ କହିଲା ସତ୍ୟବ୍ରତ, ''ଆଃ, ଆପଣ ଯାନ୍ତୁ ଏ ଘରୁ । ମୋତେ ଏକା ରହିବାକୁ ଦିଅନ୍ତୁ । ଏକା, ଏକା, ଏକା । That is my destiny.''

''ମୁଁ ଯିବିନି ଏ ଘରୁ, ଯେ ପର୍ଯ୍ୟନ୍ତ ଆପଣ ପ୍ରକୃତିସ୍ଥ ନ ହୋଇଛନ୍ତି । '' ବଡ଼ ପାଟିରେ କହିଲା ଇନ୍ଦିରା ।

''To hell with you. ଆପଣ କାହିଁକି ମୋର ବ୍ୟକ୍ତିଗତ କଥାରେ ଇଣ୍ଟାରଫିଅର କରୁଛନ୍ତି । ପ୍ଲିଜ୍ ଲିଭ୍ ମି । ''

ଆହୁରି ଜୋର୍ ଗଳାରେ କହିଲା ଇନ୍ଦିରା, ''ଆପଣ ମଣିଷ ନା ଚୁହାଡ । ଅତି ଇତର ଲୋକ ପରି ମଦ ପିଇ ଗଡୁଛନ୍ତି । ଆପଣଙ୍କର ଏ ଅବସ୍ଥା ଦେଖି ଚାକର ବାକର କ'ଣ ଭାବୁଛନ୍ତି ଜାଣନ୍ତି ? ''

''ଆଇ ଡୋଣ୍ଟ କେଅାର । '' ସିମିତି କାନ୍ଥ ଆଡକୁ ମୁହଁ କରି ଶୋଇଛି ସତ୍ୟବ୍ରତ ।

''ଆପଣ ସତ୍ୟବ୍ରତ ଚୌଧୁରୀ । ଚୌଧୁରୀ ବଂଶର ନୀଳରକ୍ତର ଧାରା ଆପଣଙ୍କ ଶିରାରେ ଶିରାରେ । ଆପଣ ଶିକ୍ଷିତ, ଶିଳ୍ପୀ, ସଙ୍ଗୀତଜ୍ଞ । '' କଣ୍ଠରେ ଯେତେ ବିଷ ମିଶା ଯାଇପାରେ, ମିଶେଇ ଇନ୍ଦିରା କହିଲା, ''ଓଃ, ମୁଁ ଲଜ୍ଜାରେ ମରିଯାଉଛି, ଆପଣଙ୍କ ପରି ଗୋଟାଏ ପଶୁକୁ ମୁଁ ମୋର ମନ ପ୍ରାଣ ଦେଇ ଭଲ ପାଇଛି । '' ଆଖିରୁ ଲୁହ ବୋହି

ଯାଉଥାଏ ତାର । ''ଆଉ ସବୁଠୁ ମୋତେ ବାଧୁଛି, ଯେତେବେଳେ ମୁଁ ଭାବୁଛି ସୁବ୍ରତ ଏଇ ବାପର ପୁଅ । ଉଃ ଭଗବାନ । ! ''

''Hold your tongue, you heartless woman'' ଗର୍ଜି ଉଠିଲା ସତ୍ୟବ୍ରତ । ଖଟରୁ ଓହ୍ଲେଇ ଠିଆ ହେଲା ଟଳମଳ ହୋଇ ।

''Yes, ମୁଁ ସତ୍ୟବ୍ରତ ଚୌଧୁରୀ । ଡିହସାହିର ଚୌଧୁରୀ ବଂଶର ଦାୟାଦ । ସୁବ୍ରତର ବାପା । '' ହାତ ବଢ଼େଇ ମଦ ବୋତଲଟା ଧରି ଫିଙ୍ଗିଲା କାନ୍ଥକୁ । ଗୁଣ୍ଡା ହୋଇଗଲା ବୋତଲଟା । ଟିପୟକୁ ଗୋଟାଏ ଗୋଇଠା ମାଇଲା । ଝଣ ଝଣ କରି ଭାଙ୍ଗିଗଲା ଗିଲାସ । ସିଧା ହୋଇ ଠିଆ ହେଲା ସତ୍ୟବ୍ରତ, ''ମୁଁ Yes I, ସତ୍ୟବ୍ରତ ଚୌଧୁରୀ - ଦୁଇ ହାତ ଯୋଡି ତୁମର ପ୍ରଣୟ ପ୍ରାର୍ଥନା କରିଥିଲି ଇନ୍ଦିରା, ତୁମେ ମୋତେ ସ୍ୱାର୍ଥପର ବୋଲି କହି ତଡ଼ି ଦେଇଥିଲ ।Yes, you insulted my love, the sacred love that I cherish for you । ତୁମେ ଜାଣ, ଭଲକରି ଜାଣ, ତୁମକୁ ନ ପାଇଲେ ମୋର ବଞ୍ଚି ରହିବାର ମାନେ କିଛି ହୁଏନି । କିନ୍ତୁ, ତୁମେ ମୋତେ ନେଇ ଖେଳିଛ ଇନ୍ଦିରା, You have played with my heart !'' ସତ୍ୟବ୍ରତର ଦୁଇ ଆଖିରୁ ଲୁହ ବୋହି ଯାଉଥାଏ । ''What do you care for me ? ଗୋଟାଏ ଚଷା, A forlorn, unwanted creature. ''

ଏଥର ସେ ଆଗେଇ ଆସି ଇନ୍ଦିରାର ସାମନାସାମନି ଠିଆ ହୋଇ କହିଲା, '' ମୁଁ ତୁମକୁ ଲାଞ୍ଚ ପଠେଇଥିଲି ନାଁ ? ତୁମେ କିମିତି ଏକଥା ଭାବି ପାରିଲ ଇନ୍ଦିରା ? । ଓଃ । '' ନିଜର ମୁଣ୍ଡ ବାଳରେ ଅଙ୍ଗୁଳି ପୁରେଇ ଟାଣିଲା ସେ । ''କାହିଁକି ତୁମେ ଆସିଛ ଏଠିକି ? କ'ଣ ଦେଖିବାକୁ ଆସିଛ ? ତୁମର ସହାନୁଭୂତି, କରୁଣା, ଅନୁଗ୍ରହ ମୋର କିଛି ଦରକାର ନାହିଁ । ତୁମେ ଏଠୁ ଚାଲିଯାଅ ଇନ୍ଦିରା । ପ୍ଲିଜ୍, ତୁମେ ଏଠୁ ଯାଅ । I loved you with my heart and soul, but I hate you now.''

ଇନ୍ଦିରା ଆଗ ଦେଇ ବାଥ୍‌ରୁମ୍‌କୁ ଚାଲିଗଲା ସତ୍ୟବ୍ରତ । ଭିତରକୁ ପଶି ଦୁମ୍ କରି କବାଟ ବନ୍ଦ କରିଦେଲା ।

ଇନ୍ଦିରା ବାହାରି ଆସିଲା ଘରୁ । ଆଖି ପୋଛି ଦୁଇ ତିନି ମିନିଟ୍ ଠିଆ ହେଲା ସେ ବାରନ୍ଦାରେ । ତା' ପରେ ସନିଆକୁ ଡାକିଲା, ''ମୋତେ ଛାଡିଦେଇ ଆସ । ''

ବସାରେ ଓହ୍ଲେଇ ସନିଆକୁ କହିଲା, ''କାଲି ସକାଳୁ ଖବର ଦବ କିମିତି ଅଛନ୍ତି । ''

ଦେହରେ ସେ ଅନୁଭବ କଲା ଭୀଷଣ କ୍ଲାନ୍ତି । ଲୁଗା ବଦଳେଇ ଶୋଇ ପଡ଼ିଲା ଇନ୍ଦିରା । ଖାଇବାକୁ ମନ ହେଲାନି ତାର । ଶୋଇ ଶୋଇ ଭାବିଲା ଆକାଶ ପାତାଳ ।

ତହିଁ ଆରଦିନ ସନିଆ ଆସିଲା । ହସ ହସ ମୁହଁରେ କହିଲା, ''ବାବୁ ଭଲ ହୋଇ ଗଲେଣି । ''

# ସତର

ସୁବ୍ରତ ପାଖରୁ ଚିଠି ପାଇଲା ଇନ୍ଦିରା, ସେ ଏଗାର ତାରିଖ ଦିନ ଅନୁଗୁଳ ପହଞ୍ଚୁଛି । ''ଭାରି ମଜା ହବ ଆଣ୍ଟି । ତୁମେ ତ ଅନୁଗୁଳରେ, ମୁଁ ବରାବର ତୁମ ପାଖରେ ରହିବି । ''

ଉଆର୍ଡ ବୁଲି ଫେରୁଛି ଇନ୍ଦିରା, ଖବର ଆସିଲା, କିଏ ତାକୁ ଫୋନ୍‌ରେ ଡାକୁଛି, ଅଫିସକୁ ଯାଇ ଫୋନ୍ ଧରିଲା ସେ, ''କିଏ, ! ଓ ସୁବ୍ରତ । କଉଠୁ କହୁଛ ? ତୁମ ଘରୁ, ଫାର୍ମରୁ ? ଫୋନ୍ ଲାଗିଲାଣି କି ସେଠି ? ହଁ, ମୁଁ ତ ସବୁବେଳେ ଅଛି । ତୁମେ କେତେବେଳେ ଆସୁଛ ? ଆଚ୍ଛା ଅପେକ୍ଷା କରିଥିବି । ସୁନା ପୁଅ, ଠିକ୍ ଚାରିଟା ବେଳକୁ ଆସିବ । '' ରଖିଦେଲା ରିସିଭାର । ସୁବ୍ରତ ଆସିଲାଣି ।

ଡାକ୍ତରଖାନା କାମ ସାରି ସେ ଶୀଘ୍ର ଫେରିଗଲା ବସାକୁ । ତା ପିଅନକୁ ପଠେଇ କେତେଗୁଡ଼ା ଦରକାରୀ ଜିନିଷ କିଣି ଆଣିଲା ବଜାରରୁ । ତା' ପରେ ଷ୍ଟୋଭ୍ ଜାଳି ବସି ତିଆରି କଲା ନାନା ପ୍ରକାର ଜଳଖିଆ । ସୁବ୍ରତ ଆସିବ । ତା ବାପା ମଧ୍ୟ ଆସିବେ ତା ସାଙ୍ଗରେ । ସେଇ ଦିନଠୁଁ ସେ ଆଉ ସତ୍ୟବ୍ରତକୁ ଦେଖିନି । ସନିଆ କିନ୍ତୁ ତାକୁ ବରାବର ଖବର ଦଉଥାଏ — ସେଠିକା ଖବର ।

ସତ୍ୟବ୍ରତର ସେଦିନର ଚେହେରାଟା ତାର ମନେ ପଡ଼ିଲା । ପୁରୁଷଗୁଡ଼ା ଇମିତି । ଭାରି ଅଭିମାନ ସତ୍ୟବ୍ରତର । ସେ କ'ଣ ତାକୁ ପ୍ରତ୍ୟାଖ୍ୟାନ କରିଛି ? ବରଂ ସେ ତାର ସଙ୍ଗ ଗଲା କେତେଦିନ ଭିତରେ ବେଶୀ ଲୋଡ଼ିଛି । କିନ୍ତୁ ବିବାହ ନ କରି ସେ ତାକୁ ପାଇବ କିମିତି ? ସେ କଥା ତ ସେ କହି ଦେଇଛି ତାକୁ । ସତ୍ୟବ୍ରତ ସ୍ୱାମୀ ହିସାବରେ ଅତି ଆକାଂକ୍ଷିତ । କେତେ ଗୁଣ ଲୋକଟାର । କି ସୁନ୍ଦର ଚେହେରା, କି ବଳିଷ୍ଠ ବାହୁ ବକ୍ଷ ! ତା ଛଡ଼ା ସୁବ୍ରତ । କି ଆଶ୍ଚର୍ଯ୍ୟ ପିଲା ! ଦଶ ମିନିଟ ଭିତରେ ତାକୁ ସେ ଆପଣାର କରିନେଲା । ତା' ପରେ ଆଉ ତାକୁ ଛାଡ଼ିଲାନି, ତାରି ପାଖରେ ରହିଲା । ସେ ଗାଧୋଇ ଦେଲେ ଗାଧୋଇବ, ଖୋଇଦେଲେ ଖାଇବ, ପାଖରେ ନେଇ ଶୋଇବ । ଆଠ ନ ବର୍ଷର ଏହି ସୁନ୍ଦର ବାଳକଟି ତାକୁ ମାଠୁଁ ବଳି ଭଲ ପାଇଛି । ମାତୃତ୍ୱର ମମତା ଜଗାଇଛି ତା ବକ୍ଷରେ ।

କାମ ସରିଗଲା ତାର । ପ୍ଲେଟରେ ସଜେଇ, ଢ଼ାଙ୍କି ରଖିଦେଲା ଥାକ ଉପରେ । ଓଭଲଟିନ ଆଣିଛି । ସୁବ୍ରତକୁ ଖୋଇବ । ଫଳ ଆଣିଛି — କମଳା, ନାସପାତି, ସେଓ, କଦଳୀ, କେତେ ଖାଇବ ଖାଉ । କିଛି ତ ଖାଏନି ପିଲାଟା । ହାୟ, ହାୟ, ପିଲାଦିନୁ ମା' ନାହିଁ ତାର ।

ଘଡ଼ି ଦେଖିଲା । ଚାରିଟା ବାଜିବାକୁ ପନ୍ଦର ମିନିଟ୍ ଅଛି । ଉଠି ପଡ଼ିଲା ସେ । ଲୁଗାପଟା ନେଇ ଚାଲିଗଲା ଗାଧୁଆ ଘରକୁ ।

ଠିକ୍ ଚାରିଟା ବେଳକୁ ଗାଡି ରହିଲା ଦୁଆର ମୁହଁରେ । ସେ ଘର ଭିତରୁ ବାହାରି ଆସୁ ଆସୁ ଶୁଣିଲା ଗାଡିର ଚାଲିଯିବାର ଶବ୍ଦ । ହେଇ ତ ସୁବ୍ରତ, ଆଗେଇ ଗଲା ସେ ହାତ ବଢ଼େଇ, ସୁବ୍ରତ ଦଉଡି ଆସି ଡେଇଁ ପଡ଼ିଲା ତା କୋଡକୁ । ଜାକି ଧରିଲା ସେ ସୁବ୍ରତକୁ । ଦେହରେ ଅନୁଭବ କଲା ଏକ ଅଭୂତପୂର୍ବ ଶିହରଣ , ସୁବ୍ରତର ମୁହଁ ଟେକି ଚୁମା ଦେଲା ।

''ଓ ଆଣ୍ଟି, ହାଉ ଆଇ ଲାଭ୍ ଇଉ '', ସୁବ୍ରତ ଲାଗି ରହିଥାଏ ତା ଦେହରେ । ସିମିତି ତାକୁ ନେଇ ଆସିଲା ଶୋଇବା ଘରକୁ । ଖଟରେ ବସେଇ ପଚାରିଲା । ''ବାପା ଆସିନାହାନ୍ତି ? ''

'' ହଁ, ମୋତେ ଛାଡ଼ି ଦେଇଗଲେ । ତାଙ୍କର କଉଠି କାମ ଅଛି । ସେ ସେଠିକି ଗଲେ । ଆଠଟା ବେଳକୁ ଆସିବେ । ଭାରି ମଜା ହବ ଆଣ୍ଟି । ମୁଁ ଏଠି ଆଠଟା ଯାକେ ରହିବି । ''

''ନିଶ୍ଚୟ ରହିବ । କ'ଣ ଖାଇବ କୁହ ? ''

''କିଛି ନା । ମୁଁ ଖାଇ ଆସିଛି । ''

'' ତଥାପି ଆଣ୍ଟି ପାଖରେ ଖାଇବାକୁ ହୁଏ । ''

ଗୋଟାଏ ସନ୍ଦେଶ ଆଣି ତା ପାଟିରେ ଦେଲା ଇନ୍ଦିରା । ଗିଲାସରେ ପାଣି ଢ଼ାଳି ଆଣି ରଖିଲା, ସେ ପିଇବ । ଗୋଟାଏ ନାସପାତିର ଚୋପା ଛଡଉ ଛଡଉ ପଚାରିଲା ''କେତେଦିନ ଛୁଟି ତୁମର ? ''

''ମାସେ ପାଞ୍ଚ ଦିନ । ଜାନୁଆରୀ ଷୋଳ ତାରିଖ ସ୍କୁଲ ଖୋଲିବ । ମୁଁ ଏଠି ରହିବି ଛୁଟି ସାରା ତୁମ ପାଖରେ । ତୁମେ ଚାଲନା ଆଣ୍ଟି ଫାର୍ମକୁ, ସେଠି ରହିବ ମଜା କରି । ''

''ଯିବି,ଠିକ୍ ସମୟ ହେଲେ ଯିବି ସୁବ୍ରତ । '' ଇନ୍ଦିରା ଆଶ୍ୱାସନା ଦେଲା ତାକୁ ।

''ଜାଣ ଆଣ୍ଟି,ଫାର୍ମକୁ ବାପା ଫୋନ ନେଇଛନ୍ତି । ମୋତେ କହିଲେ , ଏଥର ଆଉ ଆଣ୍ଟି ସାଙ୍ଗରେ କଥା ହେବାକୁ ଅସୁବିଧା ହବନି । ଆଜି, ପ୍ରଥମ ମୁଁ କଥା କହିଲି ତୁମ ସାଙ୍ଗରେ । ସକାଳୁ ଲାଗିଲା ଫୋନ୍ । ଓ ଆଣ୍ଟି, ତୁମେ ବସନା ମୋ ପାଖରେ । ଫଳ ଥାଉ, ମୁଁ ଖାଇବିନି । ''

''ମୁଁ ଯାଇ ତୁମ ପାଖରେ ବସିବି, ତୁମେ ଯଦି ନାସପାତି ଖାଅ । '' ଇନ୍ଦିରାର ସର୍ତ୍ତ ।

''ଆଚ୍ଛା ରାଜି । ତୁମେ ଆସ ଏଠିକି । ''ଇନ୍ଦିରାକୁ ଟାଣି ନେଇ ସୁବ୍ରତ ତା ପାଖରେ ଖଟରେ ବସେଇଲା । ତା କୋଡରେ ମୁଣ୍ଡ ରଖି ଶୋଇ ପଡ଼ି କହିଲା, ''ସେଥର ଗଲାବେଳେ ତୁମ ସାଙ୍ଗରେ ଦେଖା ହୋଇ ପାରିଲାନି ଆଣ୍ଟି । ମୋତେ ଭାରି କାନ୍ଦ ମାଡିଲା ।''

ତା ପାଟିରେ ଖଣ୍ଡେ ଫଙ୍କ ଦେଇ ଇନ୍ଦିରା କହିଲା, ''ଏଥର ମୁଁ ତ ସବୁବେଳେ ଥିବି, କାନ୍ଦ ମାଡିବ ନାହିଁ ।''

'' ଓ ଆଣ୍ଟି । ତୁମେ କେତେ ଭଲ । ''

ଆସ୍ତେ ଆସ୍ତେ ଗୋଟା ନାସପାତିଟାକୁ ଖୁଏଇଲା ସେ ସୁବ୍ରତକୁ ।

ସୁବ୍ରତ ନଜର କରି ନ ଥିଲା, ତାର ଛବି ଇନ୍ଦିରା ଟେବୁଲରେ ରଖିଛି । ଖୁସି ହୋଇ କହିଲା, ''ତୁମେ ପାଇଛ ମୋ ଛବି, ଗୁଡ୍ । ମୁଁ ବାପାଙ୍କୁ କହିଥିଲି, ତୁମକୁ ଦବାପାଇଁ ।''

ବୁଲି ବାହାରିଲେ ଦିଜଣ । ସୁବ୍ରତ ତାକୁ କହିଲା, ବାର୍ଷିକ ପରୀକ୍ଷାରେ କ୍ଲାସରେ ପ୍ରଥମ ହୋଇଛି । କେଉଁଥିରେ କେତେ ନମ୍ବର ରଖିଛି, କହିଲା । ରାୟଗଡର ଚନ୍ଦ୍ରଭାନୁକୁ ସେ ଇଂରେଜୀରେ ବିଟ୍ କରିଛି, ତାଠୁଁ ସାତ ନମ୍ବର ବେଶୀ ରଖି । ଖଇରାଗଡର ନୃପେନ୍ଦ୍ରକୁ ହରେଇ ଦେଇଛି ଅଙ୍କରେ । ''ଜାଣ ଆଣ୍ଟି, ପରୀକ୍ଷା ଦବାକୁ ଗଲାବେଳେ, ମୁଁ ତୁମ କଥା ଭାବି ଭାବି ଯାଏଁ, କଉଠି ବୁଝି ନ ପାରିଲେ, ମନେ କରେ ତୁମକୁ । ତା ପରେ ସବୁ ଆସେ । ଆଣ୍ଟି ତୁମେ ମୋର ଗାର୍ଡିଏନ୍ ଏନ୍‌ଜେଲ୍ ।'' ସେ ଲାଗି ଆସିଲା ଇନ୍ଦିରା ପାଖକୁ ।

ଆଠଟା ଆଗରୁ ତାକୁ ଖୁଏଇଲା ଇନ୍ଦିରା — ଖଣ୍ଡେ କାଟ୍‌ଲେଟ୍, ଟିକିଏ ପୁଡିଂ । ସୁବ୍ରତ ଖିଆଦିଆରେ ଭାରି ସୌଖିନ । ଅଳ୍ପ ଖାଇବ ଏବଂ ଭଲ ଜିନିଷ ଖାଇବ । ତାକୁ ଖୋଇସାରି, ହାତ ଧୋଇ, ମୁହଁ ପୋଛି ଦଉଛି, ବାହାରେ ଗାଡି ରହିଲା ଓ ହର୍ଣ୍ଣ ବାଜିଲା ।

ସୁବ୍ରତକୁ ଆଦର କରି କହିଲା, ''ବାପା ଆସିଲେଣି, ଯାଅ । ''

''କାଲି ଆସିବି ଚାରିଟା ବେଳକୁ । ସକାଳୁ ତ ତୁମର କାମ । ''

''ଆସିବ । ମୁଁ ଅନେଇ ବସିଥିବି । ''

ସୁବ୍ରତର ଯୋତାରେ ଫିତା ବାନ୍ଧିଦେଲା ଇନ୍ଦିରା । ସୁବ୍ରତ ବାହାରିଗଲା । ଦାଣ୍ଡ ଘରେ ଠିଆ ହୋଇଥାଏ ଇନ୍ଦିରା, ସୁବ୍ରତ ବୁଲି ପଡ଼ି ତାକୁ ଅନେଇଲା । ତା ପରେ ତଳକୁ ମୁଣ୍ଡକରି ଯାଇ ବାପ ପାଖରେ ବସିଲା ବୁଝିଲା, ବାପା ଆଉ ଆଣ୍ଟି ଭିତରେ କଣ ଗୋଟାଏ ଗୋଳମାଳ ହୋଇଛି ।

ତହିଁ ଆରଦିନ ହସପିଟାଲରୁ ଫେରି ଲୁଗା ବଦଳେଇବାକୁ ଯାଉଛି ଇନ୍ଦିରା । ଗୋଟାଏ ଗାଡି ଆସି ଠିଆ ହେଲା ତା ଘର ଆଗରେ । ଝରକା ବାଟେ ଦେଖିଲା, ସତ୍ୟବ୍ରତର ଗାଡି, ସନିଆ ଆଣିଛି ।

ବାହାରି ଆସିଲା ସେ ଦାଣ୍ଡପିଣ୍ଡାକୁ । ପଚାରିଲା, ''କଣ କି ସନିଆ ? ''

''ଆଜ୍ଞା ସାନବାବୁଙ୍କୁ ସାପ କାମୁଡ଼ିଛି, ଜଲଦି ଆସନ୍ତୁ । ''

ଥରିଗଲା ଇନ୍ଦିରାର ଦେହ, ''ସାପ କାମୁଡିଛି ? କି ସାପ ? ''

'' ଆଜ୍ଞା ଗୋଖର । ''

''କଣ କହୁଛ ସନିଆ ? '' ପାଗଳପରି ଦଉଡିଲା ଇନ୍ଦିରା ଏସିଷ୍ଟେଣ୍ଟ ସାର୍ଜନ ଘରକୁ । ତାଙ୍କୁ ଡାକି ସବୁ କହିଲା । ଔଷଧ, ଇନ୍‌ଜେକ୍‌ଶନ୍ ନେଇ ଦୁଗ ଡାକ୍ତର ଆସି ବସିଲେ ଗାଡିରେ ।

''ଜଲଦି ଚଲାଅ । '' ଇନ୍ଦିରା ଅଧୈର୍ଯ୍ୟ ହୋଇ କହିଲା ।

ଗାଡି ଆସି ପହଞ୍ଚିଲା ଫାର୍ମରେ । ଡେଇଁପଡ଼ି ଇନ୍ଦିରା ପଶିଗଲା ଘର ଭିତରକୁ । ସୁବ୍ରତ ଶୋଇଛି ଗୋଟାଏ ଖଟରେ । ତାର ବାଁ ଗୋଡରେ କ୍ଷତ, ଲିଗେଚାର ବନ୍ଧା ହୋଇଛି । ତାକୁ ଦେଖି, ହସି, ହାତ ବଢ଼େଇଲା ସୁବ୍ରତ, ''ଓ ଆଣ୍ଟି, ତୁମେ ଆସିଛ । '' ସୁବ୍ରତ ପାଖରେ ଯାଇ ଠିଆ ହେଲା ଇନ୍ଦିରା । କ୍ଷତ ଦେଖିଲା । ସୁବ୍ରତ ମୁହଁକୁ ଚାହିଁଲା । ସେ ମୁରୁକି ମୁରୁକି ହସୁଛି ।

''ମୁଁ ମାରି ଦେଇଛି ସେ ସାପକୁ ଆଣ୍ଟି । ଏତେ ବଡ଼ କୋବ୍ରା । ''

ଇନ୍ଦିରା ଆଖିରୁ ଲୁହ ଝରୁଥାଏ । ଅନେଇଲା ସେ ସତ୍ୟବ୍ରତକୁ । କଳା ପଡ଼ିଯାଇଛି । ସେ ନିର୍ବାକ ହୋଇ ଠିଆ ହୋଇଛି କାନ୍ଥକୁ ଆଉଜି ।

ସୁବ୍ରତ କହିଲା, '' ତୁମେ କାନ୍ଦୁଛ କାହିଁକି ଆଣ୍ଟି । କିଛି ହୋଇନି ମୋର । ଏଇ ଦଉଡିଟା କାଟୁଛି । ''

ଏସିଷ୍ଟେଣ୍ଟ ସାର୍ଜନ ଆସି ପରୀକ୍ଷା କଲେ ତାକୁ । ପଚାରିଲେ, '' କେତେବେଳର ଘଟଣା ଏ ? ''

ସତ୍ୟବ୍ରତ ଉତ୍ତର ଦେଲା, ''ଦଶଟା ବେଳର । ''

''କି ସାପ ? ''

''ଗୋଖୁର ? ''

ନାଡି ଦେଖିଲେ ଡାକ୍ତର , ଠିକ୍ ଅଛି । ଲିଗେଚାର ପରୀକ୍ଷା କରି ଦେଖି ଖୋଲି ଦେଲେ । ଦୁଇଘଣ୍ଟା ଆଗର ଘଟଣା, ଗୋଖୁର ସାପ । ନା, ବିଷ ଯାଇନି ।

ସତ୍ୟବ୍ରତ କହିଲା, ''ଖୁବ୍ ସମ୍ଭବ ବିଷ ଯାଇନି, ସୁବ୍ରତ ଆଣ୍ଠୁ ଯାକେ ମୋଜା ପିନ୍ଧିଥିଲା । ସାପର ଚୋଟ ସେଇ ମୋଜା ଉପରେ ବସିଛି । ଖାଲି ଗୋଟାଏ ଘଦ ଦେଇଛି ।''

ଆଉଥରେ ସୁବ୍ରତକୁ ପରୀକ୍ଷା କଲେ ଡାକ୍ତର । କାର୍‌ବୋଲିକ୍‌ଲୋଶନ ଦେଇ କ୍ଷତଟା ଧୋଇ ଦେଇ ବେଣ୍ଡେଜ୍ ବାନ୍ଧିଦେଲେ । ଭୟର କାରଣ ନାହିଁ । କିନ୍ତୁ ସୁବ୍ରତ ଶୋଇଥାଉ । ଗୋଟାଏ ଇନ୍‌ଜେକ୍‌ସନ ଦେଲେ— ଯଦି କିଛି ଥାଏ, ସାବଧାନ ହେବାରେ କ୍ଷତି କଣ ? ତା ପରେ ଉଠିଲେ ସେ ।

'' ଓ ଆଣ୍ଟି, ତୁମେ କ'ଣ ଚାଲିଯିବ ? '' ଇନ୍ଦିରାର କାନିକୁ ଦୁଇ ହାତରେ ଭିଡ଼ି ଧରିଲା ସୁବ୍ରତ ।

"ନା, ଆପଣ ଥାନ୍ତୁ ଡକ୍ତର ମହାପାତ୍ର । ତାକୁ ଟିକିଏ ଗରମ ଦୁଧ ଖାଇବାକୁ ଦିଅନ୍ତୁ ।"

ସୁବ୍ରତକୁ ପଚାରିଲେ । "ସାପକୁ କଉଠୁ ପାଇଲ ?"

"ସେଇ ବନ୍ଧରେ । କି ବଡ଼ ସାପ । ଏତେ ବଡ଼ ।"

ଦୁଇ ହାତ ବିସ୍ତାର କଲା ସୁବ୍ରତ । "ମୋତେ ଚେଜ୍ କଲା । ମୁଁ ତାକୁ କିକ୍ କରିଦେଲି । ତା ପରେ ଗୋଟାଏ ଗୁଳିରେ, ବାସ୍ ଆଇ ହେଭ୍ କିଲ୍ଡ଼ ଇଟ୍ ।"

"ଖୁବ୍ ବାହାଦୁରି କରିଛ । ଥେଙ୍କ ଇଉ ।"

ହସିଲେ ଡାକ୍ତର । ସତ୍ୟବ୍ରତକୁ କହିଲେ, "ତା' ହେଲେ ମିଷ୍ଟାର ଚୌଧୁରୀ, ମୋତେ ଟିକିଏ ପହଞ୍ଚେଇ ଦବାର ବ୍ୟବସ୍ଥା କରନ୍ତୁ । ଭୟ କରିବାର କିଛି କାରଣ ନାହିଁ । ବିଷ ଯାଇନି ଦେହକୁ । The boy is in fine spirits. ଡକ୍ଟର ମହାପାତ୍ର ତ ରହିଲେ ।"

ସତ୍ୟବ୍ରତ ତାଙ୍କୁ ନେଇଗଲା ଗାଡିକୁ ।

ସେ ଅନୁଗୁଳ ଫେରିଗଲେ ।

## ଅଠର

ଡାକ୍ତରଙ୍କ ଅଭୟ ସତ୍ତ୍ୱେ ଇନ୍ଦିରାର ମନ ମାନିଲା ନାହିଁ । ସନିଆ ମା ହାତରେ ବିଛଣା ତକିଆ ମଗେଇ ଆଣିଲା । ଗଦି, ବିଛେଇ ବିଛଣାକୁ ଖୁବ୍ ନରମ କଲା । ତକିଆ ଗୁଡାକୁ ଗୋଟାକୁ ଉପରେ ଗୋଟାଏ ରଖି ବେଶ୍ ଉଞ୍ଚ କଲା । ସୁବ୍ରତକୁ ସେଇ ତକିଆରେ ଆଉଜି ଶୋଇବାକୁ କହିଲା । ତାର ବାଁ ଗୋଡଟାକୁ ଯେତେଦୂର ସମ୍ଭବ ତଳକୁ କରି ରଖିଲା । ସୁବ୍ରତକୁ ପଚାରିଲା, "ଅସୁବିଧା ଲାଗୁଛି ?"

ସୁବ୍ରତ ମନା କଲା ।

ଭୀମ ନିମପତ୍ର ଆଣିଦେଲା । ସେଥିରୁ ଦି'ଟା ପତ୍ର ଛିଣ୍ଡେଇ ପାଣିରେ ଧୋଇ ସୁବ୍ରତ ପାଟିରେ ଦେଲା, "ଚୋବେଇଲ ?"

ସୁବ୍ରତର ପାଟି ପିତା ହୋଇଗଲା । ସେ ନୀମପତ୍ରକୁ ବାହାର କରି ଆଣିଲା ପାଟିରୁ । "ଉଃ, ଭୀଷଣ ପିତା !"

"ଠିକ୍ କହୁଛ ? ପିତା ଲାଗୁଛି ।"

"ହଁ ।" ସୁବ୍ରତ ଓଠ ଉପରେ ଚର୍ବିତ ପତ୍ର । ଇନ୍ଦିରା ତା ଓଠକୁ ପୋଛିଦେଲା ।

"ପାଟିଟା ପିତା ଲାଗୁଛି ଯେ ଆଣ୍ଟି ।"

ତା ପାଟିକୁ ଭଲ କରି ଧୋଇଦେଲା ଇନ୍ଦିରା । ବେଗ୍‌ରୁ ଗୋଟାଏ ଚକୋଲେଟ୍ କାଢ଼ି ତା ପାଟିରେ ଦେଇ କହିଲା, "ଚୋବେଇ ଫିଙ୍ଗିଦିଅ ।"

ପୁଣି ଥରେ ତା ପାଟି ଧୋଇ ଦେଲାରୁ ସୁବ୍ରତ ଚୁପ୍ କରି ବସିଲା । ଇନ୍ଦିରା ତା ପାଖରେ ବସି ମୁଣ୍ଡ ଆଉଁଶିଦେଲା ।

"କି ଦୁଷ୍ଟ ହେଲଣି ତୁମେ ? ତୁମକୁ ସବୁବେଳେ ଆଖି ଆଗରେ ରଖିବାକୁ ହବ । ସାପ ସାଙ୍ଗରେ କିଏ ଲାଗେ ? "

"ତୁମେ ଭୁଲ କରୁଛ ଆଣ୍ଟି । ମୁଁ ଲାଗିନି ସାପ ସାଙ୍ଗରେ । ବନ୍ଧକୁ ବୁଲି ଯାଉଥିଲି । ସନିଆ ମୋ ସାଙ୍ଗରେ ଥିଲା । ମୁଁ ଜଙ୍ଗଲ ଆଡକୁ ଗଲି, ଗୋଟାଏ ଗଛରେ ଦେଖିଲି ହରଡ ଚଢ଼େଇ, ବନ୍ଧୁକ ଥାଏ ମୋ ହାତରେ । ସନିଆ ପରିବା ତୋଳୁଥାଏ । ଗୋଟିଏ ଉଇହୁଙ୍କା ଉପରେ ଗୋଡ ରଖି ମୁଁ ଉପରକୁ ଅନେଇ ଦେଖୁଛି, ଚଢ଼େଇ କୁଆଡେ ଗଲେ । ଖସ ଖସ ଶବ୍ଦରେ ତଳକୁ ଚାହିଁ ଦେଖେ ଗୋଟାଏ ସାପ । ମୁଁ ତ ପଳେଇ ଯାଉଥିଲି, ସେ ଚେଜ୍ କଲା, କି ଫାଷ୍ଟ ମୁଭ୍‌ମେଣ୍ଟ ତାର । ମୁଁ ଦେଖିଲି ପାରିବିନି ତା ସାଙ୍ଗରେ । ଘୁରି ତାକୁ କିକ୍ କରିଦେଲି । ସାପଟା ଛିଟିକି ପଡ଼ିଲା ଦୂରକୁ, ଗୁଳି କରିଦେଲି । ଆଇ କିଲ୍‌ଡ୍ ଇଟ । କିଛି ହୋଇ ନ ଥିଲା ମୋ ଗୋଡ । ଉଲେନ୍ ସକ୍‌ସ ଥିଲା ତ ! ଟିକିଏ ଖାଲି ସ୍କ୍ରେଚ୍, ବାପା ଡରିଗଲେ ।ସେ ଜାଗାଟାକୁ ଡେଟଲ ଦେଇ ଧୋଇ ଛୁରିରେ ଚିରିଦେଲେ । ରକ୍ତ ବାହାରି ଗଲା । ଗୋଟାଏ ଦଉଡି ଆଣି ଜଙ୍ଘରେ ବାନ୍ଧିଦେଲେ । ଭୀମ କ'ଣ ଔଷଧ ଦେଲା, ଖାଇବାକୁ ସୁଙ୍ଘିବାକୁ, ତାପରେ ତୁମେ ଆସିଲ । " ହସିଲା ସେ । ଇନ୍ଦିରା କାନ୍ଧରେ ମୁଣ୍ଡ ରଖିଲା ।

"ଓ, ବନ୍ଧୁକ ନେଇ ଶିକାର କରିବାକୁ ଜଙ୍ଗଲକୁ ଯାଇଥିଲ ? "

"ହଁ, ବାର୍ଡ ସୁଟିଂ । "

ଇନ୍ଦିରା ବୁଝିଲା । ଚୌଧୁରୀ ବଂଶର ଢଙ୍ଗ । ନ' ବର୍ଷର ପିଲାକୁ ବନ୍ଧୁକ ମାରିବାକୁ ଦିଆଯାଏ । ବନ୍ଧୁକ ନେଇ ଶିକାର କରିବାକୁ ଉତ୍ସାହ ଦିଆଯାଏ ।

"ସୁବ୍ରତ, ତୁମର ଯେ ଟିକିଏ ଗରମ ଦୁଧ ପିଇବା ଦରକାର ? "

"ତୁମେ ଆଣିଦେଲେ ପିଇବି । "

"ତା ହେଲେ, ତୁମେ ସେମିତି ଶୋଇଥାଅ । ମୁଁ ଦୁଧ ଆଣେ । "

ରୋଷେଇ ଘରକୁ ଯାଇ ଦୁଧ ଗରମ କରି ଆଣି ସୁବ୍ରତକୁ ଖୋଇଲା ଇନ୍ଦିରା । ତାକୁ ଭଲ କରି ଶୋଇ ଦେଇ କହିଲା, "ତୁମେ ଟିକିଏ ବିଶ୍ରାମ କର, ମୁଁ ଆସୁଛି । ତୁମର ବହି ସବୁ କାହିଁ ? ବସି ବସି ଗପ ବହି ପଢ଼ନ୍ତ । "

"ଓ ଆଣ୍ଟି,ସେ ସବୁ କିଛି ଖୋଲା ହୋଇନି ଏ ପର୍ଯ୍ୟନ୍ତ, କାଲି ତ ମୋଟେ ମୁଁ ଆସିଲି । କଉଠି ଅଛି କେଜାଣି ? "

"ଆଚ୍ଛା ମୁଁ ଦେଖେଁ ? "

ଘରୁ ବାହାରିବାକୁ ଯାଉଛି, ପଣି ଆସିଲା ସନିଆ । ତା ହାତରେ କେତେଗୁଡା ବହି, ଇନ୍ଦିରା ଦେଖିଲା — ପିଲାଙ୍କ ସଂସ୍କରଣ ।

''ରବିନଶନ କ୍ରୁସୋ । ''

''ପଢ଼ିଛି ।'' ସୁବ୍ରତ କହିଲା ।

''ଗାଲିଭାରସ୍ ଟ୍ରାଭେଲ୍ସ୍ । ''

'' ନା ପଢ଼ିନି । ଦିଅ ମୋତେ ସେଇ ବହିଟା ଆଣି । ''

''ତୁମେ ଶୋଇ ଶୋଇ ପଢ଼ । ମୁଁ ଆସୁଛି । ''

ଇନ୍ଦିରା ବାହାରିଗଲା ଘରୁ । ତାର ଇଚ୍ଛା ଏ ଲୁଗାଟା ବଦଳାନ୍ତା, ଉଆର୍ଡ ବୁଲିଛି ସେ ଏ ଲୁଗା ପିନ୍ଧି । ଅସ୍ୱସ୍ତି ଲାଗୁଛି ।

ସନିଆ ମା ଆସି ଠିଆ ହେଲା, ''ଲୁଗା ବଦଳେଇବ ନାହିଁ ମା ? ଡାକ୍ତରଖାନାରୁ ଏଠିକି ସିଧା ଆସିଛ ପରା ? ''

''କିମିତି ବଦଳେଇବି ? '' ହସିଲା ଇନ୍ଦିରା, '' ଆଉ ତ ଲୁଗା ଆଣିନି । ''

'' କାହିଁକି ? ସନିଆ ତୁମ ଘରୁ ଲୁଗା ଆଣିଛି । ''

''ଆଣିଛି ? କାହିଁ ? ''

ଖୁସି ହୋଇ ଆଗେଇ ଗଲା ସେ ସନିଆ ମା ସାଙ୍ଗରେ । ଗୋଟାଏ ସୁଟକେଶ ଆସିଛି ତାର, ଗାଧୁଆ ଘରକୁ ଯାଇ ପୁଣି ଥରେ ଗାଧୋଇଲା ସେ । ଲୁଗା ପାଲଟିଲା । ବାହାରି ଆସି ଦେଖିଲା, ସତ୍ୟବ୍ରତ ନିଶ୍ଚଳ ହୋଇ ବସିଛି ବୈଠକଖାନାରେ । ଦୟା ହେଲା ଇନ୍ଦିରାର, ତାକୁ ଦେଖି । ସେ ଯାଇ ଠିଆ ହେଲା ତା ପାଖରେ । ସତ୍ୟବ୍ରତ ମୁହଁ ବୁଲେଇ ଦେଖିଲା ତାକୁ । ପୁଣି ସାମନାକୁ ଚାହିଁଲା ।

''ମିଷ୍ଟାର ଚୌଧୁରୀ ? '' ମୃଦୁ କଣ୍ଠରେ ତାକୁ ଡାକିଲା ଇନ୍ଦିରା । ପୁଣି ଅନେଇଲା ସତ୍ୟବ୍ରତ ତା ଆଡକୁ ।

''ଆପଣ ଚୁପଚାପ ବସିଛନ୍ତି ଯେ ? ''

ଗୋଟାଏ ଲମ୍ବା ନିଶ୍ୱାସ ପକେଇଲା ସତ୍ୟବ୍ରତ ''କଣ କରିବି କହନ୍ତୁ । ''

''ଯାହା ସବୁ ଦିନେ କରନ୍ତି । ସୁବ୍ରତ ପାଇଁ ଚିନ୍ତା କରିବାର କିଛି ନାହିଁ । ସେ ଭଲ ଅଛି । ଆପଣ ଉଠନ୍ତୁ । ଗାଧୋଇଲେଣି ? ''

''ନା ।''

'' ତା ହେଲେ ଯାନ୍ତୁ, ଗାଧୋଇ ପଡନ୍ତୁ । ଖାଇ ନବା । ମୋତେ ଭାରି ଭୋକ କଲାଣି । ବେଳ କେତେ ହେଲାଣି ଖିଆଲ ଅଛି ? ପ୍ରାୟ ଦୁଇଟା । ''

ଚମକି ପଡ଼ିଲା ସତ୍ୟବ୍ରତ । ଉଠିଗଲା ସେ ସେଠୁ ।

ଖାଇବା ଟେବୁଲରେ ସେ ସତ୍ୟବ୍ରତଙ୍କୁ ବାଢ଼ି ଦଉଥାଏ । ତା ଭାତରେ ଘିଅ ଢ଼ାଳି ଗୋଳେଇ ଦେଲା । ନିଜେ ବିଶେଷ କିଛି ନ ଖାଇଲେ ମଧ୍ୟ ସତ୍ୟବ୍ରତଙ୍କୁ ଯୋରକରି ବାଟିଏ ମାଂସ ଖୁଏଇଲା । ସତ୍ୟବ୍ରତ ଚୁପ୍‌ଚାପ୍ ତାର ଅତ୍ୟାଚାର ସହ୍ୟ କଲା ।

ଖିଆ ସରିଲାରୁ ଇନ୍ଦିରା ଚାଲିଗଲା ସୁବ୍ରତ ପାଖକୁ । ସେ ଗପ ବହିରେ ନିମଗ୍ନ, ଆଣ୍ଟି ଆସିବା ଜାଣି ପାରିଲା ନାହିଁ । ଇନ୍ଦିରା ତାକୁ ସିମିତି ଛାଡ଼ି ଦେଇ ଚାଲି ଆସିଲା ସତ୍ୟବ୍ରତର ଶୋଇବା ଘରକୁ । ଘରେ ପଶି ଦେଖିଲା, ସତ୍ୟବ୍ରତ ଝରକା ପାଖରେ ଠିଆ ହୋଇ ସିଗ୍ରେଟ ଟାଣୁଛି ।

ପରିବେଶକୁ ସ୍ୱାଭାବିକ କରିବାକୁ ଦୃଢ଼ ସଂକଳ୍ପ ହେଲା ଇନ୍ଦିରା । ସତ୍ୟବ୍ରତକୁ ଇମିତି ମୁହଁ ଶୁଖେଇ ବୁଲିବାକୁ ଦବନି ସେ । କଥାର ସୂତ୍ରପାତ କଲା ସେ, ‘‘ମୁଁ ଭାବିଲି, ଆପଣ ଶୋଇଲେଣି । ’’

ଖଟରେ ବସିଲା ସେ ।

ସତ୍ୟବ୍ରତ ଘୂରି ଅନେଇଲା ତାକୁ ମିନିଟିଏ ଖଣ୍ଡେ, ବୁଝି ପାରିଲାନି ଇନ୍ଦିରାର ଏ ରୂପକୁ । ପୁଣି ବାହାରକୁ ଅନେଇଲା ।

ପଚାରିଲା ଇନ୍ଦିରା , ‘‘ମୋର ଛବି ଉଠେଇଥିଲେ ଯେ କାହିଁ ? ’’

ଏଥର ସତ୍ୟବ୍ରତ ଆଗେଇଗଲା ତା ପଢ଼ା ଟେବୁଲ ପାଖକୁ । ଡ୍ରୟାର ଟାଣି, ବାହର କଲା ଇନ୍ଦିରାର ଫୋଟୋଗ୍ରାଫ୍ । ବଢ଼େଇ ଦେଲା ତା ହାତକୁ ।

ଛବି ନେଇ ଦେଖିଲା ଇନ୍ଦିରା । ରଙ୍ଗିନ ଛବି, ଅଥଚ ପରିଷ୍କାର ଉଠିଛି । ପଛ କାଛର ସେଇ ମାତୃତ୍ୱର ଛବିଟାର ଛାୟା ଦିଶୁଛି । ସେ କିନ୍ତୁ ପ୍ରମିନେଣ୍ଟ ହୋଇଛି ଛବିରେ । ଛବିଟା ହାତରେ ଧରି ଦୃଷ୍ଟିରେ ଅନୁରାଗ ମିଶେଇ ସେ ଚାହିଁଲା ସତ୍ୟବ୍ରତକୁ ।

‘‘କି ଭାଷାରେ ଆପଣଙ୍କୁ କୃତଜ୍ଞତା ଜଣେଇବି କୁହନ୍ତୁ ତ । ’’

ସତ୍ୟବ୍ରତ ନୀରବ ।

‘‘ଆପଣ କଣ ମୋ ସାଙ୍ଗରେ କଥା କହିବେନି ବୋଲି ଠିକ୍ କରିଛନ୍ତି ? ’’

ଏଥର ସତ୍ୟବ୍ରତର ଓଠ କଣରେ ହସ ଦିଶିଲା ।

‘‘ମୁଁ କିମିତି ଆପଣଙ୍କୁ କୃତଜ୍ଞତା ଜଣେଇବି ବୁଝି ପାରୁନି ଇନ୍ଦିରା ଦେବୀ । ଆପଣ ଯାହା କରୁଛନ୍ତି ସୁବ୍ରତ ପାଇଁ, ମୋ ପାଇଁ...’’

‘‘ପୁଣି ଦେବୀ ଯୋଡୁଛନ୍ତି କାହିଁକି ? ସେଦିନ ତ ଖାଲି ଇନ୍ଦିରାରେ କାମ ସାରିଥିଲେ ।’’ ହସ ମୁହଁରେ କହିଲା ଇନ୍ଦିରା । ‘‘ମୁଁ ଏତେ ଅପରାଧ କରିଛି ଯେ, କୈଫିୟତ ଦବାର ମୁହଁ ନାହିଁ ମୋର । ମୁଁ ଆଶାକରି ନ ଥିଲି ଆପଣ ଆଜି ଆସିବେ ବୋଲି । ’’

‘‘ଆସିଲି ତ ଦେଖିଲେ । ’’

''ସୁବ୍ରତ ଆପଣଙ୍କୁ ଟାଣି ଆଣିଲା । ''

''ହଁ । ମୁଁ ତ ଅଣନିଶ୍ୱାସୀ ହୋଇ ରହିଥିଲି । ବାଟ ପାଉ ନ ଥିଲି । କଣ କିମିତି କଲେ,ଆପଣଙ୍କୁ ମୁଁ ଫେରି ପାଇବି । ଆପଣଙ୍କ ଅଭିମାନ ହିମାଳୟ ପରି । ''

''ସେଟା ରକ୍ତର ଦୋଷ । ଡିହସାହିର ଚୌଧୁରୀମାନେ ସବୁଦିନେ ଅଭିମାନୀ ।''

''ଇମିତି ଗୋଟାଏ ଅଭିମାନୀ ମଣିଷ ସାଙ୍ଗରେ ଘର କରିବି କିମିତି କୁହ ତ ? ବାପତ ବାପ, ପୁଅର କଥା କଥାକେ ଅଭିମାନ, କଥା କଥାକେ ଲୁହ । ''

''ତୁମେ, ତୁମେ ମୋତେ କ'ଣ ସତରେ କ୍ଷମା କରିଛ ଇନ୍ଦିରା ? ସତରେ ତୁମେ ମୋତେ ଚାହୁଁଛ ? '' ଖୁସିରେ ଉଦ୍‌ଭାସିତ ହୋଇ ଉଠିଲା ସତ୍ୟବ୍ରତର ମୁଖ ମଣ୍ଡଳ ।

ଇନ୍ଦିରା ମୁଚୁକି ମୁଚୁକି ହସୁଥାଏ ।

''କୁହ । ମୋତେ ବଞ୍ଚି ରହିବାକୁ ଅବଲମ୍ୱନ ଦିଅ ଇନ୍ଦିରା । ମୁଁ ଭାରି ଦୁଃଖୀ, ଭାରି ଏକା, ତୁମକୁ ପାଇଲେ ସ୍ୱର୍ଗ ପାଇବି ଦୁଇ ହାତରେ । ''

ସେଇ ଦୁର୍ଦ୍ଦାନ୍ତ, ଅଭିମାନୀ ସତ୍ୟବ୍ରତ ଚୌଧୁରୀ ବସି ପଡ଼ିଲା ତଳେ, ଇନ୍ଦିରା ଆଗରେ ଏବଂ ତା ମୁହଁଟା ଇନ୍ଦିରା କୋଡରେ ରଖି, ତ ।ର କଟି ଦେଶକୁ ଦୁଇ ହାତରେ ଭିଡ଼ି ଧରିଲା । ଇନ୍ଦିରା ଦେଖିଲା ସତ୍ୟବ୍ରତ ଆଖିରେ ଲୁହ ।

''ଛି ଉଠ । ମୋ ଗୋଡତଳେ ତୁମେ ବସିବ କାହିଁକି ? ''

ସତ୍ୟବ୍ରତ ସାଙ୍ଗରେ ସେ ବି ଉଠି ଠିଆ ହେଲା । ତା କାନ୍ଧରେ ହାତ ରଖି କ'ଣ କହିବାକୁ ଯାଉଥିଲା ସତ୍ୟବ୍ରତ । ଶୁଭିଲା, ସୁବ୍ରତ, ତୀବ୍ର କଣ୍ଠରେ ଚିତ୍କାର କରୁଛି, ''ଆଣ୍ଟି-ଇ-ଇ-ଇ । ''

ଦୁଇଜଣଯାକ ଚମକି ପଡ଼ି ଦଉଡିଗଲେ ସୁବ୍ରତ ଶୋଇବା ଘରକୁ । ସେ ବହି ପଢ଼ିସାରି, ଦୁଇ ହାତ ଉପରକୁ ଟେକି ଅଳସ ଭାଙ୍ଗୁଛି ।

'' ବହି ସରିଗଲା ଆଣ୍ଟି । ତୁମେ କୁଆଡେ ଥିଲ ଏତେବେଳଯାକେ ? ''

''ଆମେ ତ ଏଇ ଖାଇସାରି ଆସୁଛୁ । '' ସତ୍ୟବ୍ରତ କହିଲା ।

'' ଓଁ ଆଣ୍ଟି,ମୋତେ ଭୋକ ଲାଗିଲାଣି କ'ଣ ଖାଇବି ମୁଁ ? ''

''ସତରେ ତ ? '' ଇନ୍ଦିରା ଚାଲିଗଲା ତାର ଖାଇବା ବ୍ୟବସ୍ଥା କରିବାକୁ ।

ସତ୍ୟବ୍ରତ ପଚାରିଲା ''ଗୋଡ ବଥା କରୁଛି ? ''

''ନା । ''

''ଆଉ ବହି ପଢ଼ିବୁ ? ପଢେଇ ଦେବି ? ''

''ନା, ଆଣ୍ଟି । ''

''ଆଣ୍ଟି ଆସିବ ତୋର ଖାଇବାର ନେଇ । ''

''ଆଣ୍ଟି ଆଜି ରହିବେ ଏଠି, ରାତିରେ ? ''

"ତୁ ପଚାରୁନୁ ଆଣ୍ଟିକୁ ?"

"ତୁମେ ତାଙ୍କୁ ରହିବାକୁ କହିବ ବାପା।"

ଇନ୍ଦିରା ପଶି ଆସିଲା ଘରକୁ।

"କଣ ଚାଲିଛି ବାପ ପୁଅଙ୍କର ?"

"ତୁମେ ଆଜି ଏଠି ରହିବ ଆଣ୍ଟି।" ସୁବ୍ରତ କହିଲା।

"ଆଚ୍ଛା ରହିବି। ତୁମେ ଟିକିଏ ଅପେକ୍ଷା କର ସୁବ୍ରତ। ତୁମର ଖାଇବାର ଆସୁଛି। ମୁଁ ଟିକିଏ ଫୋନ୍ କରିଦିଏ ଡକ୍ଟର ଚ୍ଛେନାଙ୍କୁ।" ସେ ଚାଲି ଆସିଲା ବୈଠକଖାନାକୁ। ସୁବ୍ରତ ଘରେ ବାପା ପୁଅ ଶୁଣିଲେ, ଇନ୍ଦିରା ପଚାରୁଛି — "ଆଉ କଣ କରିବାକୁ ହବ ? ସୁବ୍ରତକୁ ମୁଁ ଶୋଇବାକୁ ଦେଇନି। ଦରକାର ନାହିଁ ? ଆଚ୍ଛା ଶୁଣନ୍ତୁ, ମୁଁ ଆଜି ଅନୁଗୁଳ ଫେରୁନି। ସୁବ୍ରତ ଛାଡୁନି। ଚପରାସିକୁ କହିବେ ସେ ମୋ ଘରେ ଶୋଇବ ରାତିରେ। ହଁ ମୁଁ ଲୁଗା ପାଇଛି। ଥେଙ୍କସ୍। ଏଁ — ହଁ କାଲି ସାତଟାବେଳକୁ ଫେରିବି।"

ସୁବ୍ରତ ତକିଆରେ ଆଉଜି ଶୋଇଛି। ଦୁଇ ପାଖରେ ବସିଛନ୍ତି ବାପା ଆଉ ଆଣ୍ଟି। ଗପ ଚାଲିଛି ନାନା ବିଷୟରେ। ସୁବ୍ରତ ଦେଖିଲା ବାପା ଆଉ ଆଣ୍ଟି ଖୁସିରେ କଥାବାର୍ତ୍ତା ହେଉଛନ୍ତି। ସେ ଆଶ୍ଚର୍ଯ୍ୟ ହେଲା। ଆଣ୍ଟି ବାପାଙ୍କୁ ତୁମେ କହୁଛନ୍ତି ବାପା ମଧ୍ୟ ଆଣ୍ଟିଙ୍କୁ ତୁମେ କହୁଛନ୍ତି। ସୁବ୍ରତର ଖାଇବାର ଆସିଗଲା, ତାକୁ ଖୋଇଦେଲା ଇନ୍ଦିରା। ପାଣି ପିଇସାରି ସେ କହିଲା।

"ଆଣ୍ଟି ମୋତେ ଏଠି ଭଲ ଲାଗୁନି।"

"ବାହାରକୁ ଯିବୁ ?" ବାପା ପଚାରିଲେ।

"ହଁ।"

ସନିଆ ଆସିଲା। ବାହାର ବାରନ୍ଦାରେ ଗୋଟାଏ ଆରାମ ଚୌକିରେ ବସିଲା ସୁବ୍ରତ। ଇନ୍ଦିରା ଆସି ବସିଲା ତା ପାଖରେ।

"ଆଣ୍ଟି, କଟକ ଯିବା ଚାଲ ?" ସୁବ୍ରତ ପ୍ରସ୍ତାବ ଦେଲା।

"କିମିତି ଯିବା, ମୋର ଚାକିରି ଅଛି ଯେ ?"

"ଚାକିରି ଛାଡ଼ିଦିଅ ଆଣ୍ଟି।"

"ଖାଇବି କଣ ?" ହସି ପଚାରିଲା ଇନ୍ଦିରା।

"ତୁମେ ତ ଡାକ୍ତର। ଘରେ ବସି ରୋଗୀ ଦେଖିବ, ସେଇ ଡେଣ୍ଟିଷ୍ଟ ପରି।"

ସତ୍ୟବ୍ରତ ଆସିଲା। "କଣ ହେଲା ?" ପଚାରିଲା ସେ।

"ସୁବ୍ରତ କହୁଛି ମୋତେ ଚାକିରି ଛାଡ଼ି ଦବାକୁ।" ଇନ୍ଦିରା ଜଣେଇଲା।

"ଛାଡ଼ି ଦିଅ।" ସତ୍ୟବ୍ରତର ଉପଦେଶ।

''ପୋଷିବ କିଏ ? ବୁଢ଼ା ହୋଇଗଲେ ?''

''ତୁମର ପୁଅ ଅଛି, ସେ ପୋଷିବ ।''

''କଣ ସୁବ୍ରତ ? '' ହସି ପଚାରିଲା ଇନ୍ଦିରା । ''ସତରେ ତୁମେ ପୋଷିବ ମୋତେ ବୁଢ଼ା ହୋଇଗଲେ ? ''

''ତୁମେ ବୁଢ଼ା ହବନି । '' ରାୟ ଦେଲା ସୁବ୍ରତ ।

ହସି ଉଠିଲେ ସତ୍ୟବ୍ରତ ଓ ଇନ୍ଦିରା ।

ସେଦିନ ରାତିରେ ସୁବ୍ରତ ପାଖରେ ବିଛଣା ହେଲା ତାର । ସଂଧ୍ୟାବେଳେ ତାକୁ ଗପ କହିଲା ଇନ୍ଦିରା । ତା ପରେ ତାକୁ ଖୋଇ, ପେଇ, ଶୋଇ ପକେଇଲା ।

ଖାଇବାକୁ ଡେରି ଅଛି । ଗୋଟାଏ ବହି ନେଇ ଆସି ବସିଲା ବୈଠକଖାନାରେ । କିଛି ସମୟ ପଢ଼ିଛି, ଶୁଣିଲା, ଦୂରରୁ ଆସୁଛି ବେହେଲାର ମଧୁର ସୁର । ଉତ୍କର୍ଣ୍ଣ ହୋଇ ଶୁଣିଲା । ବୁଝି ପାରିଲା ନାହିଁ କଉଠୁ ଆସୁଛି । ଉଠି ଠିଆ ହେଲା । ସତ୍ୟବ୍ରତ ବଜଉଛି ନିଶ୍ଚୟ । ନା ଏ ରେଡିଓର ସଂଗୀତ ନୁହେଁ । ବୁଲି ବୁଲି ସେ ଆସି ଠିଆ ହେଲା ଷ୍ଟୁଡ଼ିଓ ଦୁଆରେ । ସତ୍ୟବ୍ରତ ତାହେଲେ ଏଇଠି ଅଛି । ସଙ୍ଗୀତ ଶେଷ ହେବା ଯାକେ ସେ ବାହାରେ ଅପେକ୍ଷା କଲା । ତା' ପରେ ଷ୍ଟୁଡ଼ିଓ ଦୁଆର ଖୋଲି ଦେଖିଲା ସତ୍ୟବ୍ରତ ବସିଛି ଗାଲିଚାରେ । ତା ହାତରେ ବେହେଲା ।ଜହ୍ନ ଆଲୁଅ ଆସି ପଡ଼ିଛି ଘର ସାରା । ଦ୍ୱାର ଖୋଲା ଶବ୍ଦରେ ଅନେଇଲା ସତ୍ୟବ୍ରତ ।

''କିଏ ଇନ୍ଦିରା ? ଆସ, ବସ ।''

ସେଇ ଚନ୍ଦ୍ରାଲୋକରେ ଆଗେଇ ଗଲା ଇନ୍ଦିରା ତା ପାଖକୁ । ବସିଲା । ପୁଣି ଛଡ଼ି ଚଳେଇଲା ସତ୍ୟବ୍ରତ ବେହେଲାରେ । ପନ୍ଦର ମିନିଟ୍ ବଜେଇଲା । ଗୁଡାଏ ମିଠା ସୁର ଝରି ପଡୁଥାଏ ଯନ୍ତ୍ରଟାରୁ । ଶବ୍ଦ ତରଙ୍ଗ ଥରି ଥରି ସରି ଯାଉଥାଏ । ଗୋଟାଏ ଦୀର୍ଘ ନିଶ୍ୱାସ ପକେଇଲା ଇନ୍ଦିରା ।

କିମିତି ଲାଗିଲା ଚୁନି ? ପଚାରିଲା ସତ୍ୟବ୍ରତ ।

ଇନ୍ଦିରା, ଚୁନି ଡାକରେ ଚକିତ ହେଲା । ସତ୍ୟବ୍ରତ ମୁହଁରେ ଏ ଡାକ ଏଇ ପ୍ରଥମ ।

''ଅପୂର୍ବ '', କହିଲା ଇନ୍ଦିରା । '' ତୁମେ ଅପୂର୍ବ, ତୁମ ସଂଗୀତ ଅପୂର୍ବ, ତୁମ ଚିତ୍ର ବି ଅପୂର୍ବ । ''

''ତୁମ ଛବିଟା ତ ଦେଖିନ ?''

''ମୋର ଛବି ?''

''ହଁ, ଆଙ୍କିଛି ମୁଁ । ଦେଖିବ ?''

ସତ୍ୟବ୍ରତ ସୁଇଚ ଟାଣି ଷ୍ଟୁଡ଼ିଓ ଆଲୋକିତ କଲା । ଇଜେଲ୍ ଉପରେ ଗୋଟାଏ ଛବି ରହିଛି । କନାଢ଼ଙ୍କା ହୋଇଛି । ସତ୍ୟବ୍ରତ ଉଠି ଠିଆ ହେଲା । ଆଉ ଗୋଟାଏ ସୁଇଚ

ଟାଣିବାରୁ ଅନେକ ଗୁଡାଏ ଆଲୁଅ ଜଳି ଉଠିଲା । ସତ୍ୟବ୍ରତ ଆଗେଇ ଯାଇ କନାଟା କାଢ଼ି ଦେଲା ଛବିରୁ । ଇନ୍ଦିରା ବିଶ୍ୱାସ କରି ପାରିଲାନି ତା ଆଖିକୁ । କଣ କରିଛି ସତ୍ୟବ୍ରତ ତାକୁ । ସେ ପିନ୍ଧିଛି ନବବଧୂର ବେଶ । ମୁଣ୍ଡରେ ତାର ଓଢ଼ଣା, ତା ଉପରେ ମୁକୁଟ । କପାଳରେ ସିନ୍ଦୂର ବିନ୍ଦୁ । ବେକରେ ମଣିହାର । ନାକରେ ଶ୍ୱେତ ପଥରର ଫୁଲି । ଆଖିରେ ଲଜ୍ଜିତ ଚାହାଣି । ମୁହଁରେ ମିଠା ହସ । ଗୋଟାଏ ହାତରେ ଧରିଛି ସେ କେତୋଟି ପଦ୍ମକୋରକ । ପିନ୍ଧିଛି ଶଙ୍ଖା, ଚୂଡ଼ି, ବଳା । ବାହୁରେ ଅନନ୍ତ । ତାର ବକ୍ଷ ଦେଶଟା ସମୁନ୍ନତ ।

ଲାଜରେ ଲାଲ ପଡ଼ିଗଲା ସେ । ସତ୍ୟବ୍ରତ ଆଡକୁ ଚାହିଁ ପାରିଲା ନାହିଁ । ତା ଛାତିରେ ମୁଣ୍ଡଟା ଆଉଜେଇ ଠିଆ ହୋଇ ରହିଲା ।

''କିମିତି ହୋଇଛି ?'' ପଚାରିଲା ସତ୍ୟବ୍ରତ ।

''ଏ ଛବି ମୋର ନୁହେଁ ?'' ଇନ୍ଦିରାର ମୃଦୁକଣ୍ଠ ।

''ଆଉ କାହାର ?'' ହସି କହିଲା ସତ୍ୟବ୍ରତ । ''ତୁମକୁ କଳ୍ପନା କରିଛି ଶିଳ୍ପୀ । ସେଇ କଳ୍ପନାକୁ ରୂପାୟିତ କରିଛି ଏ ଛବିରେ । କାହିଁକି, ତୁମର ଆପତ୍ତି ଅଛି ? କୁହ । ଏ ଛବିକୁ ତାହେଲେ ନଷ୍ଟ କରି ଦିଆଯାଉ ।''

ଆଗେଇ ଯିବାକୁ ଖୋଜିଲା ସତ୍ୟବ୍ରତ । ଇନ୍ଦିରା ତାକୁ ଅଟକେଇଲା ।

''ନା । କିନ୍ତୁ ତୁମର ଏ ଋଣ ମୁଁ ସୁଝିବି କିମିତି ?''

ସତ୍ୟବ୍ରତ ଚାହିଁଲା ତା ମୁହଁକୁ । ଦୁଇ ହାତରେ ତା ମୁହଁକୁ ଟେକି ଧରି କହିଲା ''ଶିଳ୍ପୀର ପୁରସ୍କାର ତାକୁ ନବାକୁ ଦବ ?''

ନିର୍ବାକ ଇନ୍ଦିରା ଅପେକ୍ଷା କଲା, ଆଖି ଦି'ଟାରେ ତାର ନିମନ୍ତ୍ରଣ । ଆଉ ରହିପାରିଲାନି ସତ୍ୟବ୍ରତ । ତାକୁ ଦୁଇ ହାତରେ ଭିଡ଼ି ଧଇଲା ଛାତିରେ । ତାପରେ ଦୁଇ ଯୋଡା ଅଧର ଯୁକ୍ତ ହେଲା । କିଛିକ୍ଷଣ ପରେ ସତ୍ୟବ୍ରତ ମୁହଁ ଟେକି ଅନେଇଲା ଇନ୍ଦିରାକୁ । ଇନ୍ଦିରା ଆଖି ବୁଜିଛି ସିମିତି । ସେ ଅନୁଭବ କଲା ସତ୍ୟବ୍ରତର ପ୍ରଣୟର ଦ୍ୱିତୀୟ ପରଶ । — ତାର ସାରା ଆନନରେ, ବକ୍ଷରେ, ବାହୁରେ ।

''ଆଃ'' କହି ଆଖି ଖୋଲି ଚାହିଁଲା ସେ —

ସତ୍ୟବ୍ରତ ତା ଆଡକୁ ଚାହିଁଛି ।

''ଚାଲ ଏଥର, ଖାଇ ନିଆଯାଉ । ରାତି ଅନେକ ହେଲାଣି ।''

ସେମାନେ ଷ୍ଟୁଡିଓରୁ ବାହାରି ଆସିଲେ ।

## ଉଣେଇଶ

ସେଦିନ ସକାଳ ଡାକରେ ଚିଠି ପାଇଲେ ନାନୀ । ଚୁନି ଲେଖିଛି —

"ତୋରି କଥା ସତ ହେଲା ଲୋ ନାନୀ । ଚୌଧୁରୀଙ୍କୁ ମୁଁ ଆଉ ଅଟକେଇ ପାରିଲିନି । ଭାରି ଦୁଃଖୀ ସେ । ସେ ଏକା ଥାନ୍ତି । ମୋତେ ଦୟା ଲାଗେ । କେଡେ ଗୁଣୀ କେଡେ ବିଦ୍ୱାନ ସେ । କିନ୍ତୁ ତାଙ୍କର କେହି ନାହିଁ ଏ ଦୁନିଆରେ , ସେଇ ପୁଅଟି ଛଡ଼ା ।

"ବାପ ପୁଅ ଆସି ଠିଆ ହେଲେ ମୋ ପାଖରେ । ସୁବ୍ରତ କହିଲା — ଆଣ୍ଟି, ତୁମକୁ ମୁଁ ଆଉ ଛାଡ଼ିବିନି । ତୁମେ ଚାଲ ଆମ ଘରକୁ । ତା ବାପା ଆସି କହିଲେ — ତୁମକୁ ପାଇଲେ ମୁଁ ଦୁଇ ହାତରେ ସ୍ୱର୍ଗ ପାଇବି । କୁହ, ତୁମେ ରାଜି । ଇମିତି ମଣିଷଙ୍କୁ ନା କହିବାକୁ ମନ ବଳିଲାନି ଲୋ ନାନୀ । । ମୁଁ ରାଜି ହୋଇଛି ।

"ବୋଉକୁ, ନନାକୁ ଆଉ ତୋର ସେଇ ବୀରପୁରୁଷଙ୍କୁ ସବୁ କଥା କହିବୁ । ମୋ ପାଇଁ ସୁପାରିଶ କରିବୁ । ଚୌଧୁରୀଙ୍କ ଇଚ୍ଛା, ବାହାଘର ଶୀଘ୍ର ହଉ । କଟକରେ, ଆମ ଘରେ ବାହାଘର ହବ । ଏଟା ବି ତାଙ୍କର ଇଚ୍ଛା ଯେ କୌଣସି ଆଡ଼ମ୍ବର ହବନି । ତାଙ୍କ ଆଡୁ କିଛି ଆଡ଼ମ୍ବର ସେ କରିବେନି । ଚୁପ୍‌ଚାପ୍ ବାହାହୋଇ ଆମେ ଫେରି ଆସିବୁ ଅନୁଗୁଳ ।

"ଶ୍ରୀଘ୍ର ଉତ୍ତର ଦବୁ । ତୋ ଚିଠି ପାଇଲେ ମୁଁ କଟକ ଯିବି । "

ଚିଠି ପାଇ ଖୁସି ହୋଇ, ସ୍ୱାମୀଙ୍କୁ ସାଙ୍ଗରେ ନେଇ ଦଉଡିଲେ ନାନୀ ବାପ ଘରକୁ । ଚିତ୍ତରଞ୍ଜନ ମଧ ସକାଳୁ ଚିଠି ପାଇଛି ଚୌଧୁରୀଙ୍କ ପାଖରୁ । ସେଥିରେ ସବୁ କଥା ଲେଖିଛନ୍ତି ସେ । ବାହାଘର ପାଇଁ ଦିନ ମଧ ଠିକ୍ କରିଛନ୍ତି । ଆଉ ସାତ ଦିନ ପରେ ବାହାଘର । ଚିତ୍ତରଞ୍ଜନ ଯିମିତି ମୋଟେ ବିବ୍ରତ ନ ହୁଏ । ଯେତିକି ନ କଲେ ଚଳିବନି, ତାଠୁଁ ଅଧିକ କିଛି କରା ହେବନାହିଁ । ବରଯାତ୍ରୀ କେହି ଯିବେନି । ଖାଲି ପୁରୋହିତ ଓ ଭଣ୍ଡାରି । ଖିଆ ପିଆରେ ଅଯଥା ଖର୍ଚ୍ଚ ଯିମିତି ନ ହୁଏ ।

ଶଙ୍ଖ ବଜେଇଲା ତା ବୋଉ । ଢାଇରଗଡ଼ା ହେଲା ସେଇଦିନ ଉପରବେଳା । ବାହାଘରକୁ ତିନିଦିନ ଅଛି, ଆସିଲା ଇନ୍ଦିରା । ସୁବ୍ରତ ଆସିଛି ସାଙ୍ଗରେ ।

ଉତ୍ସବର ଆୟୋଜନ କଲା ଚିତ୍ତରଞ୍ଜନ , ପୁରା ଦମ୍‌ରେ । ତା ସାନ ଭଉଣୀର ବାହାଘର, ଡିହସାହିର ଚୌଧୁରୀଙ୍କ ସାଙ୍ଗରେ । ସେ କ'ଣ ଯିମିତି ସିମିତି କରିବ ?

ତା ବୋଉର ଗୋଡ ତଳେ ଲାଗୁ ନ ଥାଏ । ଚୁନି ତାଙ୍କର ଚୌଧୁରୀ ଘର ବୋହୂ ହବ । ଏ ସୌଭାଗ୍ୟ, ତାଙ୍କ ପିଲାବେଳେ ସବୁ ଝିଅଙ୍କ ସ୍ୱପ୍ନ ଥିଲା । ସବୁ କଲେ ସେ ।

ଗହଣା କିଣିଲେ ଝିଅ ପାଇଁ । ଖଟ, ପଲଙ୍କ, ବିଛଣା, ବାସନ ସବୁ ବ୍ୟବସ୍ଥା ହେଲା । ଜ୍ୱାଇଁଙ୍କ ପାଇଁ ହୀରା ବସେଇ ମୁଦି ତିଆରି ହେଲା ।

ଇନ୍ଦିରା ତାର ସଞ୍ଚିତ ଅର୍ଥ ଆଣି ନନାକୁ ଦେଲା ।

"ଏ କ'ଣ ତୋ ଟଙ୍କା ମୁଁ କାହିଁକି ନେବି ? ତୁ ରଖ ତାକୁ ।"

କୁଣ୍ଠିତ ହେଲା ଇନ୍ଦିରା, "ନନା, ତୁମେ ଅବୁଝା ହୁଅନି । ମୁଁ କ'ଣ ପର ? ଏ ଟଙ୍କା ତ ମୋର ନୁହେଁ — ଘରର, ସମସ୍ତଙ୍କର । ତୁମେ ନିଅ ।"

ତା ବୋଉ ଶୁଣି କହିଲେ, "ହଁ, ନବନି କାହିଁକି ? ଏ ଟଙ୍କା ତ ଚୁନି ଚାକିରି କରି ଆଣିଛି ।"

ବାହାଘର ଦିନ ସକାଳୁ ସୁବ୍ରତ ଚାଲିଗଲା ବାପ ପାଖକୁ । ସେଠି ଦେଖିଲା ଗୋଟାଏ ନୂଆ ଗାଡି ଥୁଆ ହୋଇଛି । ପଚାରିଲା ସେ, "କାହାର ଗାଡିରେ ଏଟା ସନିଆ ?"

"ଆଜ୍ଞା ଆପଣଙ୍କର ।"

"ଆମର ।"

"ହଁ ବାବୁ କାଲି କିଣି ଆଣିଛନ୍ତି । । ନୂଆ ।"

ଖୁସି ହୋଇ ସେ ଦେଖିଲା ଚାରିଆଡ ବୁଲି । ତା' ପରେ ଦୁଆର ଖୋଲି ବସିଲା ଯାଇ ଭିତରେ । ହର୍ଣ୍ଣ ବଜେଇଲା । ଉପର ପିଣ୍ଡାରେ ଆସି ଠିଆ ହେଲା ସତ୍ୟବ୍ରତ ।

"ବାପା , ହାଉ ଉଆଣ୍ଡରଫୁଲ !" ଦଉଡି ଉଠିଗଲା ସୁବ୍ରତ ଉପରକୁ । "କିଣିଲ ବାପା ଗାଡିଟା ?"

"ହଁ ରେ, ତୁ ଚଢ଼ିବୁ । ତୋ ଆଣ୍ଟି ଚଢ଼ିବ ।"

"ଓ, ହାଓ ନାଇସ୍ ଅଫ୍ ଇଉ ।" ପୁଣି ଦଉଡି ଚାଲି ଆସିଲା ସେ ଗାଡି ପାଖକୁ । ଜଣେ ନୂଆ ଡ୍ରାଇଭର ଆସିଛି । ତାକୁ ପଚାରିଲା । "ତୁମେ ଏ ଗାଡି ଚଳେଇବ ?"

"ହଁ ।"

"ଏ ଗଳି ଭିତରକୁ ନେଇ ପାରିବ ?" ଦେଖେଇ ଦେଲା ସେ ଇନ୍ଦିରା ଘରକୁ ରାସ୍ତା । "ନେଇ ଦେଖ ?" ସେ ଯାଇ ଡ୍ରାଇଭର ପାଖରେ ବସିଲା । ଉପର ବାରନ୍ଦାରୁ ସତ୍ୟବ୍ରତ କହଲା "ତାକୁ ବୁଲେଇ ଆଣ ।"

ଗଳି ଭିତରକୁ ପଶିଲା ଗାଡ଼ି ଧୀରେ ଧୀରେ । ଇନ୍ଦିରା ଘର ଆଗରେ ଗାଡି ରଖି, ଦଉଡିଲା ଭିତରକୁ ସୁବ୍ରତ । "ଓ ଆଣ୍ଟି, ଆସ ଦେଖିବ, ବାପା ନୂଆ ଗାଡି କିଣିଛନ୍ତି । ତୁମ ପାଇଁ । ଉଠ ।" ଟାଣି ଉଠେଇଲା ସେ ଇନ୍ଦିରାକୁ । ବଉଳବାଟ ପିନ୍ଧି ବସିଥିଲା ଇନ୍ଦିରା ତା ଶୋଇବା ଘରେ । ବାହା କନିଆ ସେ । ହଳଦି ଲଗେଇଛି । ଅଳତା ପିନ୍ଧିଛି । ସୁବ୍ରତ କି ବୁଝେ ତା ଅବସ୍ଥା । ପାଟି କଲା, "ଆଇ, ଆସ ଦେଖିବ ଆମ ଗାଡି ।" ଘର ସାରା

ଲୋକ, ବଂଧୁ ବାନ୍ଧବ, ଆସି ଠିଆ ହେଲେ ଦାଣ୍ଡରେ । ଇନ୍ଦିରାକୁ ଧରିଥାଏ ସୁବ୍ରତ, ''ଦେଖିଲ ? ହାଉ ଜଭଲି । ମୁଁ ଯାଏ ଏଥର । ଏଇଖଣି ତ ଆସିବି ପୁଣି । '' ସେ ଯାଇ ଗାଡିରେ ବସିଲା ।

ବାହାଘର ସରୁ ସରୁ ଗୋଟାଏ ବାଜିଗଲା । ବେଦୀରୁ ବରକନ୍ୟାକୁ ଉଠେଇ ନେଇ ଘରେ ବସାଗଲା । ସୁବ୍ରତ କଉଠି ଥିଲା, ଦଉଡି ଆସି, ଇନ୍ଦିରା ପିଠିରେ ଲାଉ ହୋଇ, ଆସ୍ତେ ଆସ୍ତେ କହିଲା । ''ମାମ୍‌ମି, ମାମ୍‌ମି, ମାମ୍‌ମି କି ମଜା ।'' କଉଡି ଖେଳ କ'ଣ ହବ, ମାଇପେ ଏ ମା ପୁଅଙ୍କୁ ଦେଖି ହସିବାକୁ ଲାଗିଲେ ।

ସତ୍ୟବ୍ରତ ବି ହସୁଥାଏ । ଇନ୍ଦିରା ସୁବ୍ରତକୁ ଟାଣି ଆଣି କୋଡରେ ବସେଇଲା । କଉଡି ଖେଳ ବନ୍ଦ ହେଲା । ସତ୍ୟବ୍ରତ ଉଠିଗଲା ଅନ୍ୟଘରକୁ । ସୁବ୍ରତ ଇନ୍ଦିରାର ଓଢ଼ଣା ଟେକି ତା ମୁହଁକୁ ଅନେଇ କହିଲା, '' ମାମ୍‌ମି, ତୁମେ କି ସୁନ୍ଦର ! ଠିକ୍ ଦୁର୍ଗାଙ୍କ ପରି । ନୁହେଁ ? ''

ଦଳକ ଯାକ ମାଇପେ ହସି ଉଠିଲେ ଏ କଥାରେ । ଅପଦସ୍ତ ହେଲା ପରି ମୁହଁ କଲା ସୁବ୍ରତ । ଇନ୍ଦିରା ତାକୁ ଦୁଇ ହାତରେ ଭିଡ଼ି ଧଇଲା ।

ଚୌଧୁରୀଙ୍କ ଇଚ୍ଛା । ଚତୁର୍ଥୀ ହୋମ ସେଇଦିନ ସାରି ଦିଆଯାଉ । କାଲି ସକାଳୁ ଇନ୍ଦିରାକୁ ନେଇ ସେ ଅନୁଗୁଳ ଫେରିଯିବ । ତାଙ୍କ ପୁରୋହିତ ସବୁ ବ୍ୟବସ୍ଥା କଲେ । ସଂଧ୍ୟା ସୁଦ୍ଧା ସବୁ କାମ ସରିଗଲା ।

ତହିଁ ଆରଦିନ ବାରଟା ବେଳକୁ ଅନୁଗୁଳରେ ଲୋକେ ଦେଖିଲେ, ଗୋଟାଏ ନୂଆ ହଳଦିଆ ରଙ୍ଗର ଗାଡି ଚଳଉଛନ୍ତି ସତ୍ୟବ୍ରତ ଚୌଧୁରୀ । ମଝିରେ ବସିଛି ତାଙ୍କ ପୁଅ ଏବଂ ତା ପାଖକୁ ବସିଛି ଅନୁଗୁଳର ଲେଡି ଡାକ୍ତର ଇନ୍ଦିରା ମହାପାତ୍ର, ବନାରସୀ ପାଟ ପିନ୍ଧି, ଓଢ଼ଣା ଦେଇ । ପଛରେ ସନିଆ ଆଣୁଛି ଲେଣ୍ଡରୋଭାରଟା — ସେଥିରେ ଭରି ହୋଇଛି ବାକ୍ସ, ବିଛଣା, ପଲଙ୍କ ।

ଅନୁଗୁଳ ସହର ଭିତରେ ଗାଡିକୁ ଧୀର କରୁଥିଲା ସତ୍ୟବ୍ରତ । ଇନ୍ଦିରା ମନା କଲା, ''ଚାଲ ଏକାଥରେ ଫାର୍ମକୁ । ''

ଗାଡିର ଗତି ପୁଣି ବଢ଼ିଲା ଏବଂ ସମ୍ବଲପୁର ରାସ୍ତାରେ ଅଦୃଶ୍ୟ ହୋଇଗଲା ।